ସ୍ପର୍ଶ

ଗାଳ୍ପିକ :

ହରିଶ୍ଚନ୍ଦ୍ର ବେହେରା

ପ୍ରକାଶକ :

ଉପେନ୍ଦ୍ରଭଞ୍ଜ ଫାଉଣ୍ଡେସନ

ବ୍ରହ୍ମପୁର - ୪

ମୁଦ୍ରଣ :

ଶିରିଡି ସାଇ ଏଣ୍ଟରପ୍ରାଇଜେସ୍

ଶାରଦା ମନ୍ଦିର ପାଖ, ବାରିପଦା

ପ୍ରଚ୍ଛଦ ଶିଳ୍ପୀ :

ଶ୍ୟାମ ପ୍ରସାଦ ପଟ୍ଟନାୟକ

ପ୍ରଥମ ପ୍ରକାଶ :

୨୫, ଡିସେମ୍ବର- ୨୦୦୫

ଉପେନ୍ଦ୍ରଭଞ୍ଜ ଫାଉଣ୍ଡେସନର ନବମ

ବାର୍ଷିକ ସାରସ୍ୱତ ସମାରୋହରେ ପ୍ରକାଶିତ

**SPARSA**

**By :**
Harish Chandra Behera

**Publisher :**
Upendra Bhanja Foundation
Berhampur-4

**Printer :**
Siridi Sai Enterprises
Near Sarada Mandir,
Baripada

**Cover Design :**
Shyam Prasad Patnaik

**First Edition :**
25th Dec. 2005
Ninth Anniversary of Upendra Bhanja
Foundation Award Ceremony.

# ଉତ୍ସର୍ଗ

ମୋର ପ୍ରିୟ  ପାଠକ ପାଠିକାଙ୍କ ହାତରେ

ଲେଖକ

# ଗଳ୍ପସୂଚୀ



***

# ସ୍ପର୍ଶ

ବରଗଛଟିର ବୟସ କେହି କହି ପାରନ୍ତି ନାହିଁ । ବୁଢା ଲୋକ ମାନେ କୁହନ୍ତି, ସେମାନେ କୁଆଡେ ପିଲା ଥିଲାବେଳେ ସେମାନଙ୍କର ଜେଜେବାପା ମାନେ କହୁଥିଲେ ଏହି ବରଗଛଟିକୁ ଦୁଇଶହ ବର୍ଷ ତଳେ ଜଣେ ସାହେବଙ୍କ ସ୍ମୃତିରେ ସେଠାରେ ଲଗାଯାଇଥିଲା । ସେ ସାହେବଙ୍କ ନାମ ମଧ୍ୟ କେହି ଜାଣନ୍ତି ନାହିଁ । ଇମିତି ଏକ ଅନିର୍ଦ୍ଦିଷ୍ଟ, ଅଲିଖିତ ଓ ମୌଖିକ ଇତିହାସରେ ବରଗଛଟି ବଢିଆସିଛି । ବରଗଛଟିର ଗଣ୍ଡିଟି ଯେତିକି ବଡ ତାର ଡାଳ ଗୁଡିକ ମଧ୍ୟ ସେହି ଅନୁସାରେ ବଡ । ଚାରିଆଡକୁ ଶାଖା ପ୍ରଶାଖା ମାନ ମେଲି ହୋଇ ଝଙ୍କାଳିଆ ହୋଇଛି । ଓହଳ ଗୁଡିକ ଭୂଇଁକୁ ସ୍ପର୍ଶ କରି ଗୋଟିଏ ଗୋଟିଏ ଗଛରେ ପରିଣତ ହୋଇଛନ୍ତି । ଗତ ମହାବାତ୍ୟା ମଧ୍ୟ ବରଗଛଟିର କୌଣସି କିଛି କ୍ଷତି କରିପାରି ନାହିଁ । ଲୋକମାନଙ୍କର ବିଶ୍ୱାସ ଏଇଟା ଗୋଟିଏ ଦେବତାଳୀ ଗଛ, ତେଣୁ କେହି ସେହି ଗଛକୁ ଚଢନ୍ତି ନାହିଁ । ସେଇଥିପାଇଁ ପକ୍ଷୀମାନଙ୍କର ଏଇଟା ଗୋଟିଏ ଅତ୍ୟନ୍ତ ନିରାପଦ ସ୍ଥାନ । ସନ୍ଧ୍ୟାରେ ସକାଳେ ପକ୍ଷୀମାନଙ୍କର କାକଳୀ ଶୁଣାଯାଏ । ନାନାଜାତି ପକ୍ଷୀମାନେ ସେଠାରେ ବସା ବାନ୍ଧିଥାଆନ୍ତି । ଡାଳ ଓ ପତ୍ର ଦ୍ୱାରା ଅତ୍ୟନ୍ତ ଗହଳ ହୋଇଥିବାରୁ ଦିନରେ ସୂର୍ଯ୍ୟକିରଣ ଭୂଇଁରେ ପଡେ ନାହିଁ, ତେଣୁ ପଥିକ ମାନଙ୍କର ଏହା ବିଶ୍ରାମ କରିବାର ଉପଯୁକ୍ତ ସ୍ଥାନ । ଏଇ ବରଗଛମୂଳେ ଯାନି ଯାତ୍ରା ହୁଏ, ଅଷ୍ଟ ପ୍ରହର ସଂକୀର୍ତ୍ତନ, ଭଜନ ଓ ମେଳା ମହୋତ୍ସବ ମହାସମାରୋହରେ ପାଳନ କରାଯାଏ ।ଚରାବୁଲା ପଶୁ ମାନଙ୍କର ମଧ୍ୟ ଏଇ ବରଗଛମୂଳ ବିଶ୍ରାମ ସ୍ଥଳ ।

ବରଗଛଟି ଅନେକ ଘଟଣା ତଥା ସାମାଜିକ ପରିବର୍ତ୍ତନର ମୂକସାକ୍ଷୀ । ଲୋକ ମାନେ କୁହନ୍ତି ଯେତେବେଳେ ଗଛଟି ଏହି ସ୍ଥାନରେ ଲଗାଯାଇଥିଲା ସେତେବେଳେ ଏଠାରେ ଆଦୌ ଜନବସତି ନଥିଲା । ଚାରିଆଡେ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା ।ବର୍ତ୍ତମାନ କିନ୍ତୁ ଏ ସ୍ଥାନଟା କୋଳାହଳମୟ, ଅନେକ ଦୋକାନ ବଜାର ଏଠାରେ ଗଢିଉଠିଛି ।

ଏଇ ବରଗଛର ଅଳ୍ପଦୂରରେ ଅନେକ ସରକାରୀ ଅଫିସ୍ ଓ କ୍ୱାଟର୍‌ମାନ ତିଆରି ହୋଇଛି। ପାଖରେ ଗୋଟିଏ ସରକାରୀ ସ୍କୁଲ ମଧ୍ୟ ଅଛି। ଖେଳଛୁଟିରେ ପିଲାଏ ଏଇ ବରଗଛମୂଳେ ଖେଳକୁଦରେ ମାତନ୍ତି। ବରଗଛର ପୂର୍ବ ପଟେ ଅଛି ସଚ୍ଚିଦାସଙ୍କର ସରକାରୀ କ୍ୱାଟର୍ ଓ ତାର ବାଉଣ୍ଡାରୀ ୱାଲ୍। ଗୋଟିଏ ଛୋଟ ଗ୍ରୀଲ୍ ଗେଟ୍। ସଚ୍ଚିବାବୁ ସ୍ୱାଧୀନତା ପୂର୍ବର ଜଣେ ଫରେଷ୍ଟର। ଅନେକ ଗୁଡିଏ ଜାଳେଣୀ କାଠର ଗଣ୍ଡିକୁ ସେ ସେଇ ବରଗଛମୂଳେ ଗଦେଇଥାନ୍ତି। ଦରକାରବେଳେ ସେଗୁଡିକ ଚିରା ହୋଇ ଜାଳେଣୀରେ ବ୍ୟବହୃତ ହୁଏ। ଇମିତି ଡାକିଦେଲେ କେହି ନା କେହି ଜଣେ ଆସି କାଠ ଚିରିଦେଇ ଯାଏ, ପାଉଣା ଯାଚିଲେ ମଧ୍ୟ କେହି ଇଚ୍ଛା କରି ଗ୍ରହଣ କରନ୍ତି ନାହିଁ, କାରଣ ଫରେଷ୍ଟର ବାବୁଙ୍କ ପାଖରେ କିଛି ନା କିଛି କାମ ହାସଲ କରିବାକୁ ଥାଏ।

ଜ୍ୟେଷ୍ଠ ମାସ ଖରା। ପ୍ରବଳ ଗରମ୍। ଦେହରୁ ଗମ୍ ଗମ୍ ଝାଳ ବହୁଥାଏ। ସେଇ ବରଗଛମୂଳେ ଗଦା ହୋଇଥିବା ଗୋଟିଏ କାଠଗଣ୍ଡି ଉପରେ ବସି ଥକ୍କା ମାରୁଛି ଶ୍ୟାମ। କାଠ ଚିରିବା ଆଜି ତାର ପାଳି ପଡିଛି। ଫରେଷ୍ଟର ବାବୁଙ୍କର କାମ ନ କଲେ ଜଙ୍ଗଲରୁ କାଠ ଆଣିବାପାଇଁ ପର୍‌ମିଟ୍ ମିଳିବ ନାହିଁ। ତା ଛଡା ପୁଞ୍ଜେ କାଠ ଚିରିଦେଲେ ବା କେଉଁ କଷ୍ଟ, ଏହାତ ନିତିଦିନିଆଁ କଥା। ନିଜକୁତ ପୁଣି ନିଜ ଘରର ସବୁକାମ କରିବାକୁ ପଡିଥାଏ। ଶ୍ୟାମର ଯୁବା ବୟସ, ବଳିଷ୍ଠ ବାହୁ, ଚଉଡା ଛାତି କୁଞ୍ଚୁକୁଞ୍ଚିଆ ମୁଣ୍ଡବାଳ, ଲମ୍ବା ଚଉଡା ମଣିଷଟାଏ। ଭାରି ସାଧାସିଧା ସରଳ ପ୍ରକୃତିର ଲୋକଟି ସିଏ। ତାକୁ ଲୋକମାନେ ବିଭିନ୍ନ ନାମରେ ଡାକନ୍ତି - ଶ୍ୟାମ, ଶାମ, ଶାମୁ, ଶାମା ଇତ୍ୟାଦି। ଖୁବ୍ କମ୍ ଲୋକ ଡାକନ୍ତି ଶ୍ୟାମ ବା ଶ୍ୟାମସୁନ୍ଦର ବୋଲି। ଶ୍ୟାମସୁନ୍ଦର ନାଁ ତାର, ଦେହର ରଙ୍ଗ ମଧ୍ୟ ଶ୍ୟାମଳ। ଆଣ୍ଠୁ ଉପରକୁ ଟେକି ପିନ୍ଧିଥିବା ଧଳା ଧୋତିର ଗୋଟିଏ କାନିରେ ଝାଳ ପୁଛୁଥିଲା ଶାମ। ଦୃଷ୍ଟି ତାର ପଡିଥିଲା ସଚ୍ଚିବାବୁଙ୍କ ଘରଦ୍ୱାର ମୁହଁ ଉପରେ। ସିମିତି କିଛି ଉଦ୍ଦେଶ୍ୟରେ ନୁହେଁ, କେବଳ ଥକ୍କା ମାରିବା ପାଇଁ ଏକ ମୁହୂର୍ତ୍ତର ଆବଶ୍ୟକ। ଅନେକ ବେଳୁ ବସିଛି ଶାମ, ଭାବୁଛି ଅନେକ କଥା, ମାନେ, ନିଜଘର କଥା।

ମନେ ପଡିଯାଉଛି ନିଜ ସ୍ତ୍ରୀ ରଇବାରୀ କଥା । ଯୁବତୀ ସିଏ । ବାହାଘର ହେବାଠାରୁ ପାଞ୍ଚ ବର୍ଷ ବିତିଗଲାଣି । ପିଲାପିଲି ହୋଇ ନାହାନ୍ତି । ସେଥିରେ ସେମାନଙ୍କର ଚିନ୍ତା ନାହିଁ, ଦୁଃଖ ନାହିଁ କିମ୍ବା ଅନୁଶୋଚନା ମଧ୍ୟ ନାହିଁ । ସେମାନଙ୍କର ଖାଇବା ପିନ୍ଧିବା ଓ ରହିବାର ଅଭାବ ନାହିଁ । ରଇବାରୀ ଆଜି ନିଜ ବିଲକୁ ଯାଇଛି ମାଟି ହାଣିବାକୁ, ଗାଁର ସ୍ତ୍ରୀ ଲୋକମାନଙ୍କ ସହିତ । ଖରାଦିନେ ବିଲକୁ ଠିକ୍ ଭାବରେ ତିଆରି ନ କଲେ, ବର୍ଷାଦିନେ ଚାଷ କରି ହେବନାହିଁ । ଜଙ୍ଗଲ ତଳିଆ ଜମି । ବନ୍ଧ ବାନ୍ଧିଲେ ବି ପାଣି ଅଟକିବ ନାହିଁ, ତଳକୁ ବହିଯିବ । ପାଣିର ସ୍ରୋତ ବନ୍ଧକୁ ଭାଙ୍ଗି ଦେବ, ପାହାଡି ଝରଣା ପାଣି କୌଣସି ପ୍ରତିବନ୍ଧ ମାନେନାହିଁ ।

ସଚିବାବୁଙ୍କ ଘର ଦ୍ୱାର ମୁହଁରେ ତାଙ୍କର ଛୋଟ ଛୋଟ ପିଲା ଦୁଇଟି ଖେଳୁଛନ୍ତି । ତାଙ୍କର ସ୍ତ୍ରୀ ରାସେଶ୍ୱରୀ ଘର ଦ୍ୱାର ମୁହଁରେ ଟଣା ଯାଇଥିବା ଦଉଡିରେ ଲୁଗା ଶୁଖାଉଛନ୍ତି, ଅନ୍ୟାନ୍ୟ କାମ କରୁଛନ୍ତି । କେତେବେଳେ ଘର ଭିତରକୁ ପଶିଯାଉଛନ୍ତି , କେତେବେଳେ ପୁଣି ଘରୁ ବାହାରି ଆସି ଦ୍ୱାର ମୁହଁରେ ଛିଡା ହୋଇ ଯାଉଛନ୍ତି । ଶ୍ୟାମ ଏସବୁ ଦୃଶ୍ୟ ଦେଖୁଛି । ଆଖି ତାର ଲାଗିଯାଇଛି ରାସେଶ୍ୱରୀ ଦେବୀଙ୍କର ସୁନା ଦିହ ଉପରେ । ଦୂରରୁ ଯିମିତି ଆଉଟା ସୁନାପରି ଝଟକୁଛି । ଦୁଇଟି ପିଲାର ମା ତଥାପି ଯୌବନର ବସନ୍ତ ଦେହରେ ରାଜୁତି କରୁଛି । କେତେସୁନ୍ଦର ଠାଣି, ଚାହାଣୀ, ପିଲା ମାନଙ୍କ ସହିତ କଥା ହେଉଛନ୍ତି, କି ସୁନ୍ଦର କଣ୍ଠସ୍ୱର, ପିନ୍ଧିଥିବା ସାଢୀ, ଅଳଙ୍କାରମାନ ଦେହକୁ ଖୁବ୍ ମାନୁଛନ୍ତି । କେତେ ସୁଖୀ ଏମାନେ ସତରେ, ଭାବୁଛି ଶ୍ୟାମ । ନିଜ ସ୍ତ୍ରୀକୁ ରାସେଶ୍ୱରୀ ଦେବୀଙ୍କ ସହିତ ମନେ ମନେ ତୁଳନା କରୁଛି । ତୁଳନା କରିବା ପାଇଁ ଉପମା ପାଉନାହିଁ । ରଇବାରୀ ଯୁବତୀ ସତ କିନ୍ତୁ ରାସେଶ୍ୱରୀ ଦେବୀଙ୍କ ସହିତ ତୁଳନୀୟ ନୁହେଁ । ସିଏ କୌଣସି ଗୁଣରେ ଏହାଙ୍କ ସହିତ ସମକକ୍ଷ ହୋଇପାରିବ ନାହିଁ । ରଇବାରୀ କେତେ କାଳୀ ଓ ରାସେଶ୍ୱରୀ କେତେ ଗୋରୀ । ଭଗବାନ କାହିଁକି ଏମିତି ସୃଷ୍ଟି କରନ୍ତି ବର୍ଣ୍ଣ ଓ ବୈଷମ୍ୟ, କଳା ଓ ଗୋରା । ମନେ ମନେ ଖୁବ୍ ପ୍ରଶଂସା କରୁଛି ଶ୍ୟାମ ରାସେଶ୍ୱରୀ ଦେବୀଙ୍କୁ । ଧନ୍ୟ ସେଇ ସଚିବାବୁ ଯିଏ ତାଙ୍କ ହାତ ଧରିଛନ୍ତି, ତାଙ୍କୁ ଧର୍ମ ପତ୍ନୀର ମର୍ଯ୍ୟାଦା

ଦେଇଛନ୍ତି । ଏମାନଙ୍କର ଦାମ୍ପତ୍ୟ ଜୀବନ କେତେ ସୁଖମୟ ସତରେ, ଭାବିବାରେ ଲାଗିଛି ଶ୍ୟାମ ।

ଇମିତି ସ୍ତ୍ରୀ ଯଦି ତାକୁ ମିଳିଥାନ୍ତା.....

ଦ୍ୱାରମୁହଁରେ ଠିଆ ହୋଇଛନ୍ତି ରାସେଶ୍ୱରୀ । ହଠାତ୍ ଚାହିଁଦେଲେ ବରଗଛମୂଳ କାଠଗଦା ଉପରକୁ, ଦେଖିଲେ ଶ୍ୟାମ ଗୋଟିଏ କାଠ ଗଣ୍ଡି ଉପରେ ବସିଛି ଓ ତାଙ୍କ ଆଡକୁ ଅନେଇ ରହିଛି । କେତେ ଠକ ଏ ଲୋକଟା, କେତେବେଳୁ ବସିଛି, କାମ କରୁନାହିଁ । ଇଏ କିମିତି ଲୋକଙ୍କୁ ଆଣି କାମରେ ଲଗାଉଛନ୍ତି କେଜାଣି, ସବୁ ଠକ ଗୁଡାକ, ଖାଲି ବସି ବସି ଯାଉଛନ୍ତି । ମନେ ମନେ ବିରକ୍ତ ହୋଇ ସେ ହାତ ଠାରି ଡାକିଲେ ଶ୍ୟାମକୁ । ବସି ଥିବା ସ୍ଥାନରୁ କାନ୍ଧରେ କୁରାଢୀଟା ପକାଇ ଉଠିଆସିଲା ଶ୍ୟାମ, ଠିକ୍ ରାସେଶ୍ୱରୀ ଦେବୀଙ୍କ ସାମ୍ନାରେ ଆସି ଠିଆ ହେଲା । କେତେ ବଳିଷ୍ଠ ଚେହେରା, ସୁନ୍ଦର ଅଙ୍ଗ ଶୌଷ୍ଠବ, ଅକପଟ ଚାହାଣୀ, ଶାନ୍ତ ସୁନ୍ଦର ସ୍ୱଭାବ, ତାଙ୍କ ସ୍ୱାମୀ ତ ଇମିତି ନୁହନ୍ତି ମନେ ମନେ ଭାବୁଛନ୍ତି ରାସେଶ୍ୱରୀ ଦେବୀ । ଏହା ସହିତ ଶାରିରୀକ ଗଠନରେ ସେ କେବେ ତୁଳନୀୟ ହୋଇ ନ ପାରନ୍ତି । କିଛି ସମୟ ଉଭୟଙ୍କର ଚାରିଚକ୍ଷୁ ମିଳନ ହେବାପରେ କଣ କହିବେ କଣ କହିବେ ଭାବୁ ଭାବୁ ହଠାତ୍ କହିଉଠିଲେ ରାସେଶ୍ୱରୀ, ସେଇଠି ବସିଛ କାମକରୁନାହଁ କାହିଁକି? ସହାସ୍ୟ ବଦନରେ ବିନା ସମ୍ବୋଧନରେ ଶ୍ୟାମ କହିଲା ଦୁଇଘଣ୍ଟାରେ ଦୁଇଟା କାଠ ଗଣ୍ଡି ଚିରି ଦେଇଛି, ଦେଖୁନ ସେଇ ବରଗଛମୂଳେ ଗଦା ହୋଇଛି ଏଇଠୁ ଦେଖାଯାଉନାହିଁ । ଯଦି କହିବ ଆଜି ସନ୍ଧ୍ୟା ପୂର୍ବରୁ ସବୁତକ କାଠ ଗଣ୍ଡି ଚିରିଦେବି । ରାସେଶ୍ୱରୀ ଦେଖିଲେ ସତକୁ ସତ ସେଇ ବରଗଛମୂଳେ ଅନେକ ପରିମାଣରେ ଚିରାକାଠମାନ ଥୁଆହୋଇଛି ଓ ଆହୁରି ମଧ୍ୟ ଆଠ ଦଶଟି କାଠଗଣ୍ଡି ଚିରା ହେବା ପାଇଁ ପଡିଛି । ଆଶ୍ଚର୍ଯ୍ୟ ହୋଇ ମନକୁ ମନ କହିଉଠିଲେ ରାସେଶ୍ୱରୀ । ଏଇଟା ମଣିଷ ନା ଦେବତା, ଦୁଇଘଣ୍ଟା ମଧ୍ୟରେ ଦୁଇଟା ବଡ କାଠଗଣ୍ଡି ଚିରିଦେଇଛି ଆହୁରି ମଧ୍ୟ ଆଠଦଶଟା କାଠଗଣ୍ଡି ସନ୍ଧ୍ୟାପୂର୍ବରୁ ଚିରିଦେବ ବୋଲି କହୁଛି । ଆଶ୍ଚର୍ଯ୍ୟ, ଏହା କେବେ କଣ ଜଣେ ମଣିଷ ପକ୍ଷରେ ସମ୍ଭବ ? ରାସେଶ୍ୱରୀ କିଛି ନକହି ଘର ଭିତରକୁ ଚାଲିଗଲେ । ଶ୍ୟାମ ସିମିତି ଠିଆ ହୋଇ ଅନେଇଥାଏ ତାଙ୍କ

ଚାଲିଯିବା ବାଟକୁ, ତାଙ୍କ ପାଦ ଚିହ୍ନକୁ ।

ମନକୁ ମନ ଭାବୁଛି ଶ୍ୟାମ କେତେ ମଧୁରତା ଭରିରହିଛି ସତରେ ଏଇ ଚାଲିରେ, ଏଇ ପାଦଚିହ୍ନରେ, ମୁହୂର୍ତ୍ତେ କଥାରେ, ଏଇ ଚାହାଣୀରେ, ଏଇଠି ଆଉ ଟିକିଏ ସମୟ ଛିଡା ହୋଇଥାନ୍ତେ କି.... ଆଖି ପୁରେଇ ଦେଖୁଥାନ୍ତି ।

ଘର ଭିତରୁ ପାଟି ଶୁଭିଲା ରାସେଶ୍ୱରୀ ଡାକୁଛନ୍ତି, ପିଲେ ଘରକୁ ଆସ ଖାଇବ । ତାଙ୍କ ଡାକ ଶୁଣି ଶ୍ୟାମ ସେହି ବରଗଛମୂଳକୁ ଫେରି ଆସିଲା । ଗୋଟାକ ପରେ ଗୋଟିଏ କାଠଗଣ୍ଡିକୁ ଚିରିବାକୁ ଲାଗିଲା । ଟିକିଏ ବି ବିଶ୍ରାମ ନାହିଁ । ଦେହରୁ ଗମ୍ ଗମ୍ ଝାଳ ବହି ଯାଉଛି, ସେଥିରେ ଶ୍ୟାମର ନଜର ନାହିଁ । ଚାହୁଁ ଚାହୁଁ କେଇ ଘଣ୍ଟା ମଧ୍ୟରେ ସବୁତକ କାଠଗଣ୍ଡି ଚିରା ହୋଇ ଗଦା ହୋଇଗଲା । ଝାଳରେ ଗାଧୋଇ ଯାଇଥିବା ଶ୍ୟାମର ଦେହକୁ ତାର ଲୁଗାକାନିଟି ଝାଳ ପୋଛିବାକୁ ସମର୍ଥ ହେଲାନାହିଁ । ଥକ୍କା ମାରିବା ପାଇଁ ଭୂଇଁ ଉପରେ ଲଥ୍‌କିନା ବସିପଡିଲା ଶ୍ୟାମ । ଭାରି ଶୋଷ, କଣ କରିବ, ଭାବିଲା ବାବୁଙ୍କ ଘରକୁ ଯାଇ ମାଲିକାଣୀଙ୍କୁ ପାଣି ମାଗିବ । ଯିବ କି ନାହିଁ ଇମିତି ଭାବୁ ଭାବୁ ଶେଷରେ ଶୋଷ ତାକୁ ପାଣି ମାଗିବାପାଇଁ ମାଲିକାଣୀଙ୍କ ଦ୍ୱାର ନିକଟକୁ ଟାଣିନେଲା । ଦ୍ୱାର ମୁହଁରେ ଠିଆ ହୋଇରହିଲା ନିଃଶବ୍ଦରେ । ମାଲିକାଣୀ ଘରୁ ବାହାରିଲେ ପାଣି ମାଗି ପିଇବ, ତାଙ୍କୁ ଡାକିବାକୁ ସେ କୁଣ୍ଠାବୋଧ କଲା । ଅନେକ ସମୟ ପରେ ରାସେଶ୍ୱରୀ ଘରୁ ବାହାରିଆସି ପ୍ରଥମେ ଦେଖିଲେ ଚିରା ହୋଇଥିବା କାଠଗଦା ପର୍ବତ ପରି ତାଙ୍କ ଘର ଦ୍ୱାର ସାମ୍ନାରେ ଥୁଆହୋଇଛି । ଶ୍ୟାମ ଗୋଟିଏ କୋଣରେ ଠିଆହୋଇଛି । ବରଗଛମୂଳରେ ଆଉ ଗୋଟିଏ ହେଲେ କାଠଗଣ୍ଡି ନାହିଁ । ଆଶ୍ଚର୍ଯ୍ୟ ହୋଇ ଅନେଇ ରହିଲେ ରାସେଶ୍ୱରୀ ଶ୍ୟାମକୁ । ଶ୍ୟାମ ସିମିତି ଠିଆ ହୋଇ ରହିଛି ନିର୍ବିକାର ଭାବରେ । ତା କାନ୍ଧର କୁରାଢୀଟା ଅସ୍ତଗାମୀ ସୂର୍ଯ୍ୟ କିରଣରେ ଚିକ୍ ଚିକ୍ କରୁଛି । ଶ୍ୟାମ ମୁହଁରେ ବିଷାଦର ଚିହ୍ନ ଲେଶ ମାତ୍ର ନାହିଁ, ବରଂ ହର୍ଷରେ ଉତ୍‌ଫୁଲ୍ଲିତ ହୋଇଉଠୁଛି । ମୁହଁରେ ତାର ଚେନାଏ ହସ ଲାଗି ରହିଛି ।ଏତେ ଗୁଡିଏ ବଡ ବଡ କାଠ ଗଣ୍ଡି ଜଣେ ମଣିଷ ପକ୍ଷରେ ଗୋଟିଏ ଦିନରେ ଚିରିବା ଆଦୌ ସମ୍ଭବ ନୁହେଁ । ଏହାତ

ଚାରି ପାଞ୍ଚ ଜଣ ଲୋକଙ୍କର କାମ । ଜଣେ ଲୋକ ଏହାକୁ ଚିରିଲା କିମିତି, ସେ ଏହା ଭାବୁଥାଆନ୍ତି । ଶ୍ୟାମ ଅନେଇ ରହିଛି ରାସେଶ୍ୱରୀ ଙ୍କ ମୁହଁକୁ । ମୁହଁ ନୁହେଁ ତ ସତେ ଯେମିତି ପୂର୍ଣ୍ଣଚନ୍ଦ୍ର । କେତେ ଜନ୍ମ ଜନ୍ମର ସମ୍ପର୍କ ଯିମିତି, ଅତି ଆପଣାର, ଅତି ନିଜର । ଇମିତି ବି କଣ ହୋଇପାରେ, ମନ ଯାହାକୁ ଚାହେଁ, ସବୁବେଳେ ଖୋଜୁଥାଏ, ସିଏ ପୁଣି କିମିତି ପର ହୋଇଯାଇପାରେ । ଏଇ ପର ଆପଣାର ପାର୍ଥକ୍ୟ କଣ? ସେଇ ଦୁଇ ଜଣଙ୍କ ସମ୍ପର୍କ ଓ ଶଦ୍ଧ ମଧ୍ୟରେ କେଉଁ ପ୍ରକାର ପ୍ରାଚୀର ଉଭାହୁଏ । ଅନେଇଛି ଶ୍ୟାମ ରାସେଶ୍ୱରୀ ଦେବୀଙ୍କ ମୁହଁକୁ ନିର୍ନିମେଷ ନୟନରେ । ସୂର୍ଯ୍ୟଙ୍କ ସୁନେଲି କିରଣରେ ଚିକ୍ ଚିକ୍ କରୁଥିବା ଶ୍ୟାମକାନ୍ଧର କୁରାଡୀ ଉପରେ ଦୃଷ୍ଟି ପଡିଛି ରାସେଶ୍ୱରୀଙ୍କର । ଶ୍ୟାମ ଆଉ ତା ଉପରେ ରାଗି ନାହିଁ ତ, ଭାବୁଛନ୍ତି ରାସେଶ୍ୱରୀ, ତା ନହେଲେ ଏତେଗୁଡିଏ କାଠଗଣ୍ଡିକୁ କିମିତି ଅଳ୍ପ ସମୟ ମଧ୍ୟରେ ସବୁ ଚିରି ପକାଇଲା । ତାଙ୍କ ମନରେ ତା ପ୍ରତି ଦୟା ଆସିଲା । ସେ ସ୍ନେହାବିଷ୍ଟ ବଦନରେ ଶ୍ୟାମ ମୁହଁକୁ ଚାହିଁଲେ । ଆହା, କି ସୁନ୍ଦର ମୁହଁ, ଶ୍ୟାମଳ ତନୁ, ନିଷ୍ପାପ ହୃଦୟ, କେତେ ସରଳ କେତେ ଉଦାର ସତରେ, ଇଏ ପୁଣି ଗୋଟିଏ ମଣିଷ । ମନକୁ ପାଇଲା ତାଙ୍କର, ତା ପ୍ରତି ସମ୍ବେଦନଶୀଳ ହୋଇଉଠିଲେ, ଡାକିଲେ - ଶ୍ୟାମ ....

ଏଁ, ଇଏ କଣ ମୋ ନାଁ ଜାଣନ୍ତି, ଚମକି ଉଠିଲା ଶ୍ୟାମ କଣ କହିବ କଣ ନ କହିବ ଭାବୁ ଭାବୁ ଉତ୍ତର ଦେଲା, ହଁ

କଣ ଦରକାର ତୁମର ?.....

ନାଁ, କିଛି ନାହିଁ । ପ୍ରବଳ ଶୋଷ ଲାଗୁଥିଲେ ମଧ୍ୟ, ସେ ପାଣି ମୁନ୍ଦିଏ ମାଗିବାକୁ କୁଣ୍ଠାବୋଧ କଲା, କିମିତି ବା ମାଗିବ, ତାକୁତ ମାଗି ଆସେ ନାହିଁ ।

ତାହେଲେ କଣ ତୁମେ ମଜୁରୀ ନବ?

ନା,

ଆଉ କଣ କିଛି ନବାକୁ ଚାହୁଁଛ?

ନା, କିଛି ନେବି ନାହିଁ

ହଠାତ୍ ଗୋଟିଏ ଦୀର୍ଘ ନିଶ୍ୱାସ ବାହାରି ଆସିଲା ରାସେଶ୍ୱରୀଙ୍କ

ହୃଦୟ କୋଣରୁ । ଆଉତ କାଠ ଗଣ୍ଡି ନାହିଁ, କରିବ କଣ । ଆସନ୍ତା କାଲିକି ଆଉ ଆସିବ କାହିଁକି , ଚୁପ୍ ରହିଲା ଶ୍ୟାମ । ରାସେଶ୍ୱରୀ ଘର ଭିତରକୁ ଚାଲିଗଲେଣି । କ୍ରମେ କ୍ରମେ ଅନ୍ଧକାର ଘୋଟି ଆସିଲାଣି । ପଶ୍ଚିମ ଦିଗର ଲାଲିମା ଫିକା ପଡିଗଲାଣି । ଶ୍ୟାମ ଗୃହାଭି ମୁଖୀ ହେଲା, ଘରେ ପହଞ୍ଚି ଦେଖିଲା ରଇବାରୀ ଶାଗ ଭାଜୁଛି, ପଖାଳ ଖାଇବ ।

ସିଏ କହିଲା ତୁ ଏତେ ଡେରି କଲୁ ଯେ, କିଛି କହିଲା ନାହିଁ ଶ୍ୟାମ, ଚୁପ୍ ରହିଲା । ଖଟ ଉପରେ ଗାମୁଛାଟାଏ ପକାଇ ଶୋଇ ପଡିଲା । ରଇବାରୀ ତାକୁ ଖାଇବାକୁ ଡାକିଲା, ଶ୍ୟାମ କହିଲା ମୋତେ ଭୋକ ଲାଗୁନାହିଁ, ତୁ ଖାଇଦେ । ରଇବାରୀ ପଖାଳ ଗଣ୍ଡେ ଖାଇ ତା ପାଖ ଖଟରେ ଶୋଇଗଲା । ଶୁନ୍‌ଶାନ୍ ରାତି ପାହିଗଲା ସିମିତି । ସକାଳୁ ଶ୍ୟାମକୁ ଜ୍ୱର । ରଇବାରୀ ତା ପାଖରେ ଜଗି ବସିଲା । ପଚାରିଲା ତୁ କିସ ଖାଇବୁ? ଶ୍ୟାମ କହିଲା ମୁଁ କିଛି ଖାଇବି ନାହିଁ, ମୋତେ ଜମା ଭୋକ ଲାଗୁ ନାହିଁ । ତାହେଲେ କଣ ଔଷଧ ଆଣିଦେବି? ନା ନା, ମୁଁ ଔଷଧ ଖାଇବି ନାହିଁ । ଜ୍ୱର ତା ମନକୁ ଛାଡିଯିବ । ଦୁଇଦିନ ପର୍ଯ୍ୟନ୍ତ ଜ୍ୱରରେ ଶୋଇରହିଲା ଶ୍ୟାମ । ହଠାତ୍ ଦିନେ ବିଳିବିଳେଇ ଉଠିଲା । ରଇବାରୀକୁ କହିଲା ତୁ କେତେ ଦିନ ଜଗିବୁ ମୋତେ । ଇମିତି ଜଗିଲେ ତ ଦିନ, ମାସ, ବର୍ଷ ଅଣ୍ଟିବ ନାହିଁ । ଏଇ ଜଗିବାରେ ଲାଭ କଣ । ଏଥିରେ ଅଛି ମମତା ନା ଆତ୍ମିୟତା ନା ବଞ୍ଚିବାର ସୁଖ, ଏଇଠି ସମ୍ପର୍କ ଅଛି ନା ଅଛି ବଞ୍ଚିବା ପାଇଁ ମାହକ, ତୁ ଯା ମାଲିକାଣୀକୁ କହିବୁ, ଶ୍ୟାମକୁ ଜ୍ୱର ହୋଇଛି, ସିଏ ଆସିଲେ ଆସିବେ ନଆସିଲେ ନାହିଁ ।

ସିଏ କହିଲା ତୁ ଏତେ ଡେରି କଲୁ ଯେ, କିଛି କହିଲା ନାହିଁ ଶ୍ୟାମ, ଚୁପ୍ ରହିଲା । ଖଟ ଉପରେ ଗାମୁଛାଟାଏ ପକାଇ ଶୋଇ ପଡିଲା । ରଇବାରୀ ତାକୁ ଖାଇବାକୁ ଡାକିଲା, ଶ୍ୟାମ କହିଲା ମୋତେ ଭୋକ ଲାଗୁନାହିଁ, ତୁ ଖାଇଦେ । ରଇବାରୀ ପଖାଳ ଗଣ୍ଡେ ଖାଇ ତା ପାଖ ଖଟରେ ଶୋଇଗଲା । ଶୁନ୍‌ଶାନ୍ ରାତି ପାହିଗଲା ସିମିତି । ସକାଳୁ ଶ୍ୟାମକୁ ଜ୍ୱର । ରଇବାରୀ ତା ପାଖରେ ଜଗି ବସିଲା ।

ପଚାରିଲା ତୁ କିସ ଖାଇବୁ? ଶ୍ୟାମ କହିଲା ମୁଁ କିଛି ଖାଇବି ନାହିଁ, ମୋତେ ଜମା ଭୋକ ଲାଗୁ ନାହିଁ। ତାହେଲେ କଣ ଔଷଧ ଆଣିଦେବି? ନା ନା, ମୁଁ ଔଷଧ ଖାଇବି ନାହିଁ। ଜ୍ୱର ତା ମନକୁ ଛାଡିଯିବ। ଦୁଇଦିନ ପର୍ଯ୍ୟନ୍ତ ଜ୍ୱରରେ ଶୋଇରହିଲା ଶ୍ୟାମ। ହଠାତ୍ ଦିନେ ବିଳିବିଳେଇ ଉଠିଲା। ରଇବାରୀକୁ କହିଲା ତୁ କେତେ ଦିନ ଜଗିବୁ ମୋତେ। ଇମିତି ଜଗିଲେ ତ ଦିନ, ମାସ, ବର୍ଷ ଅଣ୍ଟିବ ନାହିଁ। ଏଇ ଜଗିବାରେ ଲାଭ କଣ। ଏଥିରେ ଅଛି ମମତା ନା ଆତ୍ମିୟତା ନା ବଞ୍ଚିବାର ସୁଖ, ଏଇଠି ସମ୍ପର୍କ ଅଛି ନା ଅଛି ବଞ୍ଚିବା ପାଇଁ ମାହକ, ତୁ ଯାଆ ମାଲିକାଣୀଙ୍କୁ କହିବୁ, ଶ୍ୟାମକୁ ଜ୍ୱର ହୋଇଛି, ସିଏ ଆସିଲେ ଆସିବେ ନ ଆସିଲେ ନାହିଁ, ତାଙ୍କର ଇଛା। କିଛି ବୁଝି ପାରିଲା ନାହିଁ ରଇବାରୀ, ଖାଲି ଜଳଜଳ ହୋଇ ଚାହିଁ ରହିଲା ଶ୍ୟାମ ମୁହଁକୁ ।

ରଇବାରୀ କବାଟ ବାଡଉଛି, ଡାକ ଛାଡୁଛି, ମାଲିକାଣୀ.... ମାଲିକାଣୀ......। ରାସେଶ୍ୱରୀ କବାଟ ଖୋଲି ଦେଖିଲେ କୃଷ୍ଣକାୟା ଯୁବତୀଟିଏ ଦ୍ୱାର ମୁହଁରେ ଠିଆ ହୋଇଛି। ସେ କିଛି ନକହୁଣୁ ରଇବାରୀ କହିଲା ଶାମ କହିଚି ତାକୁ ଜ୍ୱର ହୋଇଛି ତୁ ଟିକିଏ ତା ପାଖକୁ ଯିବୁ। ରାସେଶ୍ୱରୀ ଆଉ କିଛି ନ ପଚାରି ରଇବାରୀ ସହିତ ଚାଲିଲେ ତା ଘରକୁ ଏକମୁହାଁ ହୋଇ ସେଇ ବରଗଛ ମୂଳ ସୁନ୍‌ସାନ୍ ବାଟ।

ଖଟରେ ଶୋଇଛି ଶ୍ୟାମ, ତିନିଦିନ ହେଲା ତାକୁ ଜ୍ୱର। ଦେହରେ ଭୀଷଣ ତାତି। ଆଖି ବନ୍ଦ କରି ଡାକୁଛି, ରଇବାରୀ...... ରଇବାରୀ.....। ରାସେଶ୍ୱରୀ ତା ମୁଣ୍ଡ ଉପରେ ହାତ ରଖିଲେ, ଇସ୍, କି ଭୀଷଣ ଜ୍ୱର । ଆହା କେତେ କଷ୍ଟ ପାଉଛି ସତରେ ଶ୍ୟାମ। ତା ଛାତିରେ ଦେହରେ ମୁଣ୍ଡରେ ହାତ ବୁଲେଇ ଆଣିଲେ ରାସେଶ୍ୱରୀ। ଶ୍ୟାମର ମୁଦ୍ରିତ ଆଖି ଜାଣିଲା, ଇଏ ସେଇ ରାସେଶ୍ୱରୀ, ସେଇ ସ୍ପର୍ଶ। ଆହା କେତେ ମଧୁର ଏ ସ୍ପର୍ଶ। କେତେ କୋମଳ ଏଇ ହାତ, କେତେ ପ୍ରାଣସ୍ପର୍ଶୀ, କେତେ ଅମୃତମୟ, ଏହା ଯେ ଅତ୍ୟନ୍ତ ଆପଣାର, ଇହକାଳ ଓ ପରକାଳର, ଏହା ଅପାର୍ଥିବ, ନୈସର୍ଗିକ, ଅବ୍ୟକ୍ତ, ଅଚିନ୍ତ୍ୟ, ଅପରିକଳ୍ପନୀୟ। ଇଏ ହେଉଛି ସେଇ

ଅମୃତମୟ ସ୍ପର୍ଶ, ଏଇ ସ୍ପର୍ଶରେ ଅଛି କେବଳ ପ୍ରାଣ, ପ୍ରେମ, ମମତା ଓ ବଞ୍ଚିବାର ସମସ୍ତ ମାଦକତା । ସେଇ ସ୍ପର୍ଶର ଶିହରଣରେ ଶୋଇ ପଡିଛି ଶ୍ୟାମ, ଜାଣେନାହିଁ ; ରାସେଶ୍ୱରୀ କେତେବେଳୁ ସେଠାରୁ ଚାଲିଗଲେଣି । ଶ୍ୟାମ ପୁଣି ବିଳବିଳେଇ ଉଠିଲା, ରଇବାରୀ...... ରଇବାରୀ...... । ରଇବାରୀ ଦଉଡି ଆସିଲା ତା ପାଖକୁ , କହିଲା, ମାଲିକାଣୀ ଆସିଥିଲେ କେତେବେଳୁ ଚାଲିଗଲେଣି, ତୁ ତ ତାଙ୍କୁ କିଛି କହିଲୁ ନାହିଁ, କେବଳ ଶୋଇ ରହିଲୁ । ସିଏ ତୋର ଦେହ ଓ ମୁଣ୍ଡରେ ହାତ ବୁଲେଇଲେ ତୁ କଣ କିଛି ଜାଣି ପାରିଲୁନାହିଁ? ତୁ ଏବେ କିଛି ଖାଇଦେ, ତିନିଦିନ ହେଲା କିଛି ଖାଇନାହୁଁ । ଶ୍ୟାମ କହିଲା ତୁ ମାଲିକାଣୀଙ୍କୁ ଆଉଥରେ ଯାଇ ଡାକିଆଣ, ସେ ଆସିଲେ ମୁଁ ଭଲ ହୋଇଯିବି । ରଇବାରୀ ପୁଣିଥରେ ଦୌଡିଲା ମାଲିକାଣୀଙ୍କ ଘରକୁ । ଦେଖିଲା ମାଲିକାଣୀଙ୍କ ଘରେ ତାଲା ଝୁଲୁଛି । ପାଖ ପଡିଶାମାନେ କହିଲେ ମାଲିକାଣୀ, ବାବୁ ଓ ପିଲାମାନେ ସମସ୍ତେ ଛୁଟିରେ ଗାଁକୁ ଚାଲିଯାଇଛନ୍ତି । କେବେ ଆସିବେ ସେମାନେ କେହି କିଛି କହି ପାରିଲେ ନାହିଁ । ବିଷାଦଭରା ମନରେ ରଇବାରୀ ଘରକୁ ଫେରି ଆସିଲା । ଶ୍ୟାମକୁ କହିଲା, ମାଲିକାଣୀ ଓ ବାବୁ ପିଲାମାନଙ୍କ ସହିତ ସେମାନଙ୍କ ଗାଁକୁ ଚାଲିଯାଇଛନ୍ତି, କେବେ ପୁଣି ଫେରିବେ କେହି କହି ପାରୁନାହାନ୍ତି । ଶ୍ୟାମ କିଛି କହିଲା ନାହିଁ । ରଇବାରୀ ତାକୁ ହଲାଇଦେଇ କହିଲା, ଏବେ ଉଠ୍ , ଖାଇବୁ । ରଇବାରୀର ଉଷୁମ୍ ହାତକୁ ଲାଗିଲା ଶ୍ୟାମର ଦେହଟା ପୁରା ଥଣ୍ଡା ହୋଇଯାଇଛି । ଯେତେ ଡାକିଲେ ଶ୍ୟାମ ଆଉ ଶୁଣୁନାହିଁ । ଦୁଲା କୁକୁର ଗୁଡିକ ଭୁକି ଭୁକି ସେଇ ବରଗଛମୂଳ ରାସ୍ତା ଆଡକୁ ଦୌଡୁଥିଲେ ।



# ମୂଷିନାନୀ

ଶାନ୍ତା ଦେଖିଲୁ ତୋ ପୁଅ କେଡେ ଦୁଷ୍ଟ, ସବୁବେଳେ ମୋର ଲୁଗାକାନିଟାକୁ ପଛପଟୁ ଟାଣିଧରୁଛି, ଯେତେ କହିଲେ ଜମା କଥା ମାନୁନାହିଁ, ଖାଲି ଖିଲି ଖିଲି ହସୁଛି। ଏହାର ରାଶି କଣ ? ମୁଁ ଭାବୁଛି ଏହାର ରାଶି ଭଗବାନ ଶ୍ରୀକୃଷ୍ଣ ଯେଉଁ ରାଶିରେ ଜନ୍ମ ହୋଇଥିଲେ ସେହି ରାଶି ହୋଇଥିବବୋଧହୁଏ । ଇଏ ଦୁଷ୍ଟାମି ପଣରେ ଖୁବ୍ ଧୁରନ୍ଧର ଦେଖୁଛି। ଆଜିଠୁ ଇମିତି ହେଲାଣି, ବଡ ହେଲେ କଣ ନ କରିବ କେ ଜାଣି, କାହାକୁ ରଖେଇ ଦେବ ନାହିଁ , କାହାକୁ ରାସ୍ତାରେ ଚଲାଇ ଦେବ ନାହିଁ। ମାଆ ହସି ହସି କୁହେ ତୁମେ ତାକୁ ବେଶି ଗେହ୍ଲା କରିଦେଇଛ ମୂଷିନାନୀ, କାହିଁ ଅନ୍ୟ ପିଲାମାନେ ତ ତୁମ ଛାଇ ସୁଦ୍ଧା ମାଡୁନାହାନ୍ତି। ମୂଷିନାନୀ ବୟସରେ ମୋ ମାଆଠୁ ବଡ ହେବେ। ମୋ ଆଈ ତାଙ୍କୁ ଡାକନ୍ତି ମୂଷିନାନୀ, ମୋ ମାଆ ଡାକେ ମୂଷିନାନୀ, ମୋର ମଧ୍ୟ ସିଏ ମୂଷିନାନୀ, ଗାଁ ସାହି ପଡିଶା ସମସ୍ତଙ୍କର ସିଏ ମୂଷିନାନୀ। ସିଏ ସ୍ୱାଧୀନତା ପୂର୍ବର ଲୋକ। ମୋତେ ସେତେବେଳକୁ ଛଅ ବର୍ଷ ମାତ୍ର।

ମାମୁଁ ଘର ବାଡ ସେପଟେ ମୂଷିନାନୀଙ୍କ ଘର। ମାଟି କାନ୍ଥ ଚାଳ ଛପର ଘର। ଦୁଇଟି କୋଠରୀ, ଗୋଟିଏ ରୋଷେଇ ଘର, ଠାକୁର ଘର ଓ ଭିତର ପଟ ଅଗଣା। ଅଗଣାକୁ ଲାଗି ଓସାରିଆ ବାରଣ୍ଡା। କାନ୍ଥ ଦ୍ୱାରା ଚାରିଆଡେ ଆବଦ୍ଧ, ପ୍ରବେଶ ଦ୍ୱାର ଗୋଟିଏ। ଘର ବାହାରପଟେ ଉଚ୍ଚ ବାରଣ୍ଡା। ସେହି ଚାଳଘରେ ସିଏ ସବୁବେଳେ ବନ୍ଦୀ। ବେଳେ ବେଳେ ଘରୁ ବାହାରିଆସି ଦାଣ୍ଡ ଦୁଆର ବାରଣ୍ଡା ଉପରେ ବସିଥାନ୍ତି। ଅତି ଆପଣାର ନ ହେଲେ କାହାରି ସହିତ କଥା ହୁଅନ୍ତି ନାହିଁ ସିଏ। ମୋ ମାଆକୁ ସିଏ ଭାରି ଭଲ ପାଆନ୍ତି। ମୋ ମାଆର ନାଁ ଶାନ୍ତିଲତା , ସିଏ କିନ୍ତୁ ଡାକନ୍ତି ଶାନ୍ତା। ବାଡି ଦୁଇପଟେ ଦୁହେଁ ଠିଆ ଠିଆ କଥା ହୁଅନ୍ତି ଅନେକ ସମୟ ପର୍ଯ୍ୟନ୍ତ। ସିଏ ମୋ ମାଆକୁ କୁହନ୍ତି କେବେ ଆସିଲୁ, କେବେ ଯିବୁ, ତୋର ଆଉ ସବୁ ଭଲତ ? ଦୁଇ ପଦ କଥାରେ ଅନେକ ଦିନର ସାଇତା ସୁଖ ଓ ଦୁଃଖ ବଣ୍ଟା ବଣ୍ଟିର ସମୟ। ମାଆ ମୋର ଭାରି ଦୁଃଖ କରି କୁହେ, ମୋ କଥା ଛାଡ ମୂଷିନାନୀ, ତୁମ କଥା କୁହ, ତୁମେ

କିମିତି ଅଛ ? ଏକୁଟିଆ କଣ ତୁମକୁ ଭଲ ଲାଗୁଛି ?ତୁମ ପାଖକୁ କଣ କେହି ଆସନ୍ତି ନାହିଁ , ବାପା , ମାଆ , ଭାଇ... ? ମୁହଁ କୁ ଶୁଖେଇ ଦେଇ ସିଏ କୁହନ୍ତି ଜନ୍ମ କଲା ବାପା ମାଆ ତ ପଚାରୁ ନାହାନ୍ତି , ଭାଇ ଓ ସାହି ପଡିଶା ପୁଣି କିଏ ? କିଏ ଅଛି ଯେ ଏ ଦୁନିଆରେ ମୋର ପୁଣି ଆପଣାର ହେବ , ଭାଇ ଓ ଭାଉଜ କଥା ଛାଡ । ସେମାନେ ତାଙ୍କର ଭଲରେ ଥାଆନ୍ତୁ । ତାଙ୍କ ସଂସାର ସୁଖରେ ଥାଉ , ଦୀର୍ଘ ନିଃଶ୍ୱାସ ପକାଇ ମୂଷିନାନୀ ଏତିକିରେ ପୂର୍ଣ୍ଣଛେଦ ପକାଇ କଥାର ମୋଡ ବଦଳାନ୍ତି । କାହିଁ ତୋର ସେହି ଦୁଷ୍ଟ ପୁଅ । ଆଜି ସକାଳଠୁ ତାକୁ ତ ଦେଖିବାକୁ ପାଉନାହିଁ । ମାଆ କୁହେ ଖାଇ ସାରି ଶୋଇଛି । ଏତିକିରେ ମୂଷିନାନୀ ଘର ଭିତରକୁ ପଶିଯାଇ କବାଟ ବନ୍ଦ କରି ଦିଅନ୍ତି ଓ ମାଆ ଚାଲିଆସେ ଘରକୁ ।

ମୁଁ ପିଲାଦିନେ କୁଆଡେ ଭାରି ହସକୁରା ଥିଲି , ଦୁଷ୍ଟ ଥିଲି । ମୁହଁରେ ସବୁବେଳେ ମୋର ହସ ଲାଗିରହିଥାଏ , ଆଉ ଖେଳରେ କୁଦରେ ସବୁବେଳେ ଦୁଷ୍ଟାମି । ଦିନେ ସନ୍ଧ୍ୟାବେଳେ ଖେଳରେ ମାତିଥାଏ ଗାଁ ଦାଣ୍ଡରେ । ବାଡ ସେପଟୁ ଡାକିଲେ ମୂଷିନାନୀ , ଆରେ ଦୁଷ୍ଟ ଆସିଲୁ ଟିକିଏ ଏଠାକୁ । ମୁଁ ସିଧା ସଳଖ ଚାଲିଗଲି ତାଙ୍କ ପାଖକୁ । ସିଏ ଡାକିନେଲେ ମୋତେ ତାଙ୍କ ଘର ଭିତରକୁ , କହିଲେ , ଦେହସାକ ଖାଲି ଧୂଳି , ତୋ ପେଣ୍ଟରେ କେତେ ଧୂଳି ଲାଗିଛି । ଦେହରୁ , ପେଣ୍ଟରୁ ଧୂଳି ଝାଡି ଦେଇ ସେ ତଳେ ବସି ପଡିଲେ । ମୁଁ ଛିଡା ହୋଇ ଅନେଇଥାଏ ତାଙ୍କର ମୁହଁକୁ । ଗୋରା ତକ ତକ ଗୋଲ ମୁହଁ । ମୁଣ୍ଡରେ ଘଞ୍ଚ କଳା କେଶ , ଲମ୍ବା ବେଣୀ , ସିଏ ଜୁଡା ବାନ୍ଧନ୍ତି ନାହିଁ । ପାନ ଖାଉଥିବାରୁ ଓଠର ରଙ୍ଗ ସବୁବେଳେ ନାଲି । ଅଙ୍ଗ ଶୋଭା ଅନିନ୍ଦ୍ୟ । ଆଖି ଦୁଇଟିରେ ଯିମିତି କେହି ଜଣେ କଜ୍ଜଳ ବୋଳି ଦେଇଛି । ଆଖି ଦୁଇଟିକୁ ଭୃଲତା ଖୁବ୍ ମାନୁଛି , ଉନ୍ନତ ନାଶା , ଆରକ୍ତ ଚିବୁକ । ହସିଦେଲେ ଯିମିତି ମୁଠାଏ ଡାଳିମ୍ବ ବୀଜ ବିଛାଡି ହୋଇ ପଡୁଛି । ଦନ୍ତ ପନ୍ତୀ ଖୁବ୍ ସୁନ୍ଦର । ଗୋଲ ଗୋଲ ଲମ୍ବା ହାତରେ ଆଙ୍ଗୁଳି ଗୁଡାକ ଚମ୍ପା କଡି ପରି ଦିଶୁଛି । ଖୁବ୍ ସୁନ୍ଦରୀ ସିଏ , ଯୌବନରେ ଭାରା କ୍ରାନ୍ତ । ମୋ ଦେହ ଉପରେ ତାଙ୍କର ସେହି ଚମ୍ପା କଡି ପରି ସୁନ୍ଦର ଆଙ୍ଗୁଳି ଗୁଡାକ ବୁଲାଇ ଆଣି କହିଲେ ,କଣ ଖାଇଛୁ ?ମୁଁ କହିଲି ,

ଭାତ, ଡାଲି, ଭଜା ଓ ତରକାରୀ । ମୋ ପେଟ ଉପରେ ହାତ ରଖି କହିଲେ କାହିଁ, ପେଟ ତ ପୂରି ନାହିଁ । ମୁଁ ହସିଲି, କେବଳ ହସିଲି, କିଛି କହିଲି ନାହିଁ । ସିଏ କହିଲେ ଟୁଟା ଭାରି ହସକୁରାଟାଏ, କଥା କଥାରେ ଖାଲି ହସ ଝରି ପଡୁଛି । ତାଙ୍କର ହାତ ସିମିତି ମୋ ପେଟ ଉପରେ ଥାଏ, ମୁଁ ଦେଖିଲି ତାଙ୍କ ଦୁଇ ହାତ ଆଙ୍ଗୁଳି, ମଣିବନ୍ଧ ଓ କହୁଣୀ ପର୍ଯ୍ୟନ୍ତ ଧଳା ଧଳା ଦାଗରେ ପୂର୍ଣ୍ଣ । ମୁଁ କହିଲି ମୂଷିନାନୀ ଏ ଧଳା ଦାଗ ଗୁଡାକ କଣ ?ସିଏ ଲୁଗାକାନୀରେ ସେଗୁଡିକୁ ଲୁଚାଇ ଦେଇ କହିଲେ, ଏ ଗୁଡାକ ସବୁ ମୋ ସାରା ଜୀବନର ଯନ୍ତ୍ରଣା, ଜନ୍ମରୁ ଅଛି, ମଲା ବେଳେ ସାଥୀରେ ଯିବ । ମୁଁ କିଛି ବୁଝି ପାରିଲି ନାହିଁ, କେବଳ ତାଙ୍କ ମୁହଁକୁ ଚାହିଁ ରହିଲି । ସିଏ ମୋ ଗାଲରେ ଚୁମାଟିଏ ଦେଇ କହିଲେ , ଯାଆ ଖେଳିବୁ ଯାଆ, ଆସନ୍ତା କାଲିକି ପୁଣି ଆସିବୁ ।

ମୁଁ ସେଠାରୁ ଚାଲିଆସିବା ପରେ ଅନୁଭବ କଲି ,ସିଏ ଭାରି ଗମ୍ଭୀର ହୋଇ ଦୀର୍ଘ ନିଃସ୍ୱାସଟାଏ ପକାଇଲେ । ମୁଁ ତାଙ୍କ ପାଖରୁ ଚାଲିଆସିଲି ସିନା, ସାରା ଜୀବନର ଯନ୍ତ୍ରଣା ଶବ୍ଦଟାକୁ ଆଦୌ ଭୁଲି ପାରିନଥିଲି । ଖେଳରେ ମୋର ମନ ଆଦୌ ଲାଗୁନଥିଲା । ମନଟା ଖାଲି ଗୁଡେଇ ତୁଡେଇ ହେଉଥିଲା । ସନ୍ଧ୍ୟାରେ ମୌକା ଦେଖି ମୁଁ ମୋ ମାଆକୁ ପଚାରିଲି, ସାରା ଜୀବନର ଯନ୍ତ୍ରଣା ମାନେ କଣ ମାଆ ?ମୋ ମୁହଁ କୁ ସିଏ ବଲ ବଲ କରି ଅନେଇ ରହି କହିଲା, କିଏ କହିଲା ତୋତେ ସବୁ ଏ କଥା, ମୁଁ କହିଲି ମୂଷିନାନୀ କହୁଥିଲେ । ତାଙ୍କ ହାତରେ ସେହି ଧଳା ଧଳା ଦାଗ ଗୁଡିକ କଣ? ମାଆ ମୁହଁରୁ କଥା ଛଡେଇ ନେଇ ଆଈ କହିଲେ, ତା ଦେହ ଯାକ ସବୁ ଧଳାଛଉ, ହତ ଭାଗିନୀଟାଏ, କେହି ତାକୁ ପଚାରୁ ନାହାନ୍ତି । ତାକୁ ଘରେ କେହି ରଖେଇ ଦେଲେ ନାହିଁ । ଏଇ ହରିଜନ ସାହିରେ ଘର ଖଣ୍ଡିଏ କରିଦେଇଛନ୍ତି , ଏଇଠି ସିଏ ସାରା ଜୀବନ ଯନ୍ତ୍ରଣାରେ କାଟିବ । ମାଆ ଓ ମୁଁ ଦୁହେଁ ଚୁପ୍‌ଚାପ୍ ଶୁଣୁଥିଲୁ, ଆଈ କହି ଚାଲିଥାଆନ୍ତି ,ଆଚାର୍ଯ୍ୟଘର ଝିଅ ସିଏ, ପୁଣି ତାଙ୍କର ବଡ ଝିଅ, ତା ତଳକୁ ଦୁଇ ଝିଅ ଓ ଦୁଇ ପୁଅ । ରକ୍ଷଣଶୀଳ ବ୍ରାହ୍ମଣ ଘର, ପୁଣି ଶାସନୀ ବ୍ରାହ୍ମଣ, ଘରେ ତାଙ୍କର ମାଛ ମାଂସ ପଶେ ନାହିଁ । ବଡ ଝିଅର ଏପରି

ଅବସ୍ଥା ଦେଖି ବୂଢୀ ବହୁତ କାନ୍ଦେ, କୁହେ କେଉଁ ଜନ୍ମରେ କେଉଁ ପାପ କରିଥିଲା ସିଏ, ଭଗବାନ୍ ତାକୁ ଦଣ୍ଡ ନ ଦେଇ ଝିଅଟିକୁ ଦଣ୍ଡ ଦେଲେ, ପର ଘରକୁ ଯିବ ଯିଏ । କିଏ ବା ତାକୁ ବାହା ହବ, ଈଶ୍ୱର କେଡେ ନିଷ୍ଠୁର ସତରେ । ଛୋଟ ଥିଲାବେଳେ ମୂଷିନାନୀର ଏଇ ଦାଗ ଗୁଡିକ କୁଆଡେ ସ୍ପଷ୍ଟ ଦେଖା ଯାଉନଥିଲା, ଯିମିତି ବୟସ ବଢିବାକୁ ଲାଗିଲା, ଦାଗ ଗୁଡିକ ସିମିତି ବଡ ବଡ ଦେଖାଗଲା । ସମସ୍ତେ କହିଲେ କୁଷ୍ଠ, ଝିଅକୁ କୁଷ୍ଠ ହୋଇଛି । ଘରୁ ଏହାକୁ ବାହାର କର, ନହେଲେ ନିଆଁ ପାଣି ସବୁ ବନ୍ଦ । କେତେ ଦିନ ବା ଗାଁ ଲୋକଙ୍କର ଦାଉ ସେମାନେ ସମ୍ଭାଳିବେ, ତାଙ୍କ ନିଜ ଘରଲୋକମାନେ ଅଭିଯୋଗ କଲେ, ଜଣକ ପାଇଁ କଣ ସମସ୍ତ ପରିବାରର ଲୋକ ଦଣ୍ଡ ଭୋଗିବେ ? ନୂଆ ହୋଇ ଆସିଥିବା ବହୁଟା କହିଲା, ଆମ ବାପଘର ଏ କଥା ଜାଣି ନଥିଲେ, ନହିଲେ ମୋ ବାପା ଏ ଘରେ ଝିଅ ଦେଇ ନଥାଆନ୍ତେ । ହେଲେ ପୁଣି ଆଗକୁ କଥା ଅଛି । ଦୁଇ ଝିଅ ଓ ଆହୁରି ଗୋଟିଏ ପୁଅ ବାହା ହେବାକୁ ଅଛନ୍ତି । ବେଳହୁଁ ସାବଧାନ, ନହେଲେ ନେଡିଗୁଡ କହୁଣୀକୁ ବୋହିଯିବ । ବୋହୁର ଏ କଥାଶୁଣି ଆଚାର୍ଯ୍ୟ ବୂଢାଙ୍କର ମନ ଭାରି ଦୁଃଖ ହେଲା, ସେଇଥିପାଇଁ ସେ ଏଇ ଚାଳ ଘରଟି ଏଠାରେ ତା'ର ରହିବା ପାଇଁ କରିଦେଇଛନ୍ତି । କିଏ ବା ତାକୁ ପଚାରିବ, କିଏ ବା ତାର ଭଲ ମନ୍ଦ ବୁଝିବ, ଭାରି ଦୁଃଖିନୀଟାଏ ବିଚାରି । ମାଆ ତାର ଏଇ କଥା ଭାବି ଭାବି ଆଖି ବୁଜିଦେଲା, ବାପଟାର ବି ଶେଷ ସମୟ ଆସିଗଲାଣି, କେତେବେଳେ ଆଖି ବୁଜି ଦେବ । ଆଜିକାଲି ଯୁଗରେ ଭାଇ ଭାଉଜ ପୁଣି କିଏ? କେହି ତାକୁ ଦେଖିବାକୁ ଏଠାକୁ ଆସନ୍ତି ନାହିଁ କି ଇଏ ମଧ୍ୟ ଗାଁ ଘରକୁ ଯାଏ ନାହିଁ । ସେହି ଘରଭିତରେ ସିଏ ସବୁ ବେଳେ ବନ୍ଦୀ । ଏକା ନିଃଶ୍ୱାସରେ କହିଗଲେ ଆଈ ଏତେ କଥା । ମନ ଭିତରଟା ମୋର ଖାଲି ଘାଣ୍ଟି ଚକଟି ହେଉଥିଲା । ମୋର ଛୁଉ ଓ କୁଷ୍ଠ ରୋଗ ବିଷୟରେ ବିଶେଷ ଧାରଣା ନଥିଲେ ବି ସାରା ଜୀବନ ଯନ୍ତ୍ରଣା ବିଷୟରେ ମୁଁ ସବୁବେଳେ ଚିନ୍ତା କରୁଥିଲି । ବିଷାଦର କାଳିମା ମୋ ବାଳକ ସୁଲଭ ମନ ଓ ପ୍ରାଣକୁ କଳା ବାଦଲ ପରି ଘୋଟି ଯାଇଥିଲା । ସେହି ଦିନଠୁଁ ମୁଁ ମନେ ମନେ ମୂଷିନାନୀର ଅତି ଆପଣାର ହୋଇଯାଇଥିଲି । ତାଙ୍କ ପ୍ରତି ମୋ ମନରେ

ସମ୍ବେଦନାର ବୀଜ ଅଙ୍କୁରିତ ହୋଇଥିଲା ଓ ଅଶେଷ ସ୍ନେହ ମମତା ମୋ ହୃଦୟ ଭିତରେ ଜନ୍ମ ନେଇ ସାରିଥିଲେ ।

ମୁଁ ସୁଯୋଗ ଉଣ୍ଟୁଥିଲି କେତେବେଳେ ମୂଷିନାନୀ ଘରକୁ ଯିବି, ତାଙ୍କ ସଙ୍ଗେ କଥା ହେବି, ତାଙ୍କ ଘର , ଠାକୁର ଘର, ରୋଷେଇ ଘର ଇତ୍ୟାଦି ବୁଲି ଦେଖିବି । ମୋଟା ମୋଟି ତାଙ୍କ ବିଷୟରେ ଆହୁରି ବେଶି ବେଶି ଜାଣିବା ପାଇଁ ଇଚ୍ଛା ହେଉଥିଲା । ଚୁପ୍ ଚାପ୍ ବାରଣ୍ଡା ଉପରେ ବସି ମଝିରେ ମଝିରେ ମୂଷିନାନୀ ଦ୍ୱାର ଆଡକୁ ଚାହୁଁଥାଏ । ତାଙ୍କର ସାମ୍ନା ଦ୍ୱାର ସବୁବେଳେ ବନ୍ଦଥାଏ । କେହି ତାଙ୍କ ଦ୍ୱାରକୁ ଯିବା ମୁଁ ଦେଖିନାହିଁ, କେବଳ ତାଙ୍କର ଇଚ୍ଛା ହେଲେ ସେ ନିଜେ ଦ୍ୱାର ଖୋଲି ବାରଣ୍ଡାରେ କିଛି କ୍ଷଣ ବସି ପୁଣି ଘର ଭିତରକୁ ଚାଲିଯାଆନ୍ତି । ମୁଁ ମନେ ମନେ ଭାବୁଥାଏ ଏବେ ଯାଇ କବାଟ ବାଡେଇବି, ଡାକିବି ମୂଷିନାନୀ, ମୂଷିନାନୀ କବାଟ ଖୋଲ, ସେ କବାଟ ଖୋଲିଲେ ଭିତରକୁ ପଶିଯାଇ କହିବି ତୁମେ କାହିଁକି କବାଟ ସବୁବେଳେ ବନ୍ଦ କରି ରଖୁଛ ? ବାହାର ବାରଣ୍ଡାରେ ବସୁନ, ମୁଁ ତୁମ ସହିତ କଥା ହେବି । ତୁମକୁ ସବୁବେଳେ ଦେଖୁଥିବି । ପୁଣି ମନେ ମନେ ଭାବୁଥାଏ ଏଇଟା ଖେଳିବା ସମୟ ନୁହେଁ, ବର୍ତ୍ତମାନ ବୁଲାବୁଲି କଲେ ଆଈ ପାଟି କରି କହିବେ ଏଇଟା ବୁଲାକିଆ ହୋଇ ଗଲାଣି, ପାଠ ପଡାରେ ଆଦୌମନ ଦେଉ ନାହିଁ । ମାମୁଁଘରେ ପୁଣି ପାଠ କଣ, ଏଠିତ ସବୁବେଳେ ବୁଲିବା କଥା, ମଜା କରିବା କଥା, ଖାଇବା, ପିନ୍ଧିବା କଥା । ଅପରାହ୍ନ କେତେବେଳେ ହେବ ଭାବୁଥାଏ । ବସି ବସି ମନଟା ଗୋଳେଇ ଘାଣ୍ଟି ହେବାରୁ ଯାଇ ବିଛଣାରେ ଶୋଇ ପଡିଲି ।

ସ୍ୱପ୍ନରେ ଦେଖୁଛି ମୂଷିନାନୀ ତାଙ୍କର କବାଟ ଖୋଲି ଦାଣ୍ଡ ବାରଣ୍ଡାରେ ବସିଛନ୍ତି, ମୋ ଆଡକୁ ହାତ ହଲେଇ ଡାକୁଛନ୍ତି । ତାଙ୍କ ମୁହଁରେ ହସ । ମୁଁ ଦୌଡି ଯାଉଛି ତାଙ୍କ ନିକଟକୁ, ସେ ମୋତେ କୋଳେଇ ନେଇ କହୁଛନ୍ତି, ତୁ କେତେ ଭଲ ପିଲା, ମୁଁ ସିନା ସିମିତି ଦୁଷ୍ଟ ବୋଲି କୁହେ । ତାଙ୍କ ଛାତିରେ ଜାକିଧରି ମୋ ମୁଁ ମୁଣ୍ଡରେ ହାତ ବୁଲେଇ ଆଣି ଚୁମା ଦେଉଛନ୍ତି । ଆଖି ବନ୍ଦ କରି ତାଙ୍କ ଛାତିରେ ମୁଣ୍ଡ ଗୁଞ୍ଜି ଦେଇଛି ମୁଁ , ଜାଣେ ନାହିଁ କେତେ ସମୟ । ମୋତେ ଲାଗିଲା

ଯିମିତି ମୁଁ ମୋ ମାଆ କୋଳରେ ମୁଣ୍ଡ ଗୁଞ୍ଜି ଦେଇଛି । ସତରେ ପୃଥିବୀ ରେ ସବୁ ମାଆ ସମାନ । ସମସ୍ତଙ୍କ କୋଳରେ ଭରି ରହିଛି ଅଜସ୍ର ସ୍ନେହ ମମତା ଓ ଅମୃତର ବାରିଧାରା । ମାତୃ କୋଳ ବୈକୁଣ୍ଠପୁରଠାରୁ ବି ଅଧିକ । ମୁଁ ଅନୁଭବ କରୁଛି ମୋ ମୁଣ୍ଡ ଉପରେ ଝରି ପଡୁଥିବା ତାଙ୍କର କେଇ ଟୋପା ଉଷୁମ ଲୁହ । ମୁଁ ତାଙ୍କ ମୁହଁକୁ ଚାହିଁଲି, ଅଶ୍ରୁଳ ମୁହଁ । ପ୍ରକୃତିସ୍ଥ ହୋଇ ଲୁଗାକାନିରେ ମୁହଁ ପୋଛିଲେ ସିଏ, କହିଲେ, ବାପଟା ପରା, ଧନଟା ପରା, ତୁ ମୋ ପାଖରୁ ଆଦୌ ଯିବୁନି, ସତ କହ । ମୁଁ କହିଲି, ତୁମ ପାଖରେ ରହିବାକୁ ମୋତେ ଭାରି ଭଲ ଲାଗୁଛି, ତୁମକୁ ଛାଡି ମୁଁ କୁଆଡେ ହେଲେ ଯିବି ନାହିଁ । ସେ ମୋ ମୁଣ୍ଡକୁ ପୁଣି ଆଉଁସି ଦେଇ ଚୁମା ଦେଲେ । ମୁଁ ସିମିତି ତାଙ୍କ ଛାତିରେ ମୁଦ୍ରିତ ନୟନରେ ମୁଣ୍ଡଗୁଞ୍ଜି ଦେଇଥାଏ ।

କେତେ ସମୟ ଶୋଇଛୁ, ଉଠୁନୁ କାହିଁକି, ଯାଆ ଖେଳିବୁ, ବାହାରେ ପିଲାମାନେ ଖେଳୁଛନ୍ତି, ଆଈଙ୍କ ଡାକରେ ମୋ ନିଦ ଭାଙ୍ଗି ଗଲା । ସତକୁ ସତ ସନ୍ଧ୍ୟା ସମୟ ପାଖେଇ ଆସୁଥାଏ । ରାସ୍ତାରେ ପିଲାମାନେ ଦୌଡା ଦୌଡି କରୁଥାଆନ୍ତି । ମୁଁ ଉଠିବସି ବାହାରକୁ ଆସି ପ୍ରଥମେ ଦେଖିଲି ସେଇ ମୂଷିନାନୀ ଦ୍ୱାରମୁହଁକୁ । ମୂଷିନାନୀ କବାଟ ଖୋଲି ବାରଣ୍ଡାରେ ବସି ପାନ ଭାଙ୍ଗୁଛନ୍ତି । ରାସ୍ତାପଟେ ତାଙ୍କର ପିଠି । ଆଉ ବିଳମ୍ବ ନ କରି ମୁଁ ଧିରେ ଧିରେ ଗଲି ତାଙ୍କ ପଛ ପଟୁ ତାଙ୍କର ପଣତ କାନିଟାକୁ ଭିଡି ଧରିଲି । ସେ ହଠାତ୍ ଚମକି ପଡି କିଏ ସେ ବୋଲି ପାଟି କଲେ । ମୋତେ ଦେଖି ହସିଦେଇ କହିଲେ, ଓ.... ତୁ... ମହାଦୁଷ୍ଟ, ମୋତେ ଏକାବେଳକେ ଡରେଇ ଦେଲୁ । ମୁଁ କହିଲି ମୂଷିନାନୀ ତୁମେ ପାନ ଖାଉଛ, ମୋତେ ଦଉନ ମୁଁ ବି ଖାଇବି । ସେ ବଡ ବଡ ଆଖି କରି ମୋତେ ଅନେଇଲେ, କିନ୍ତୁ ମୁହଁରେ ହସ ଭର୍ତ୍ତି, କହିଲେ ଏ ରସିକ ପଣ କେବେଠୁ ? ତୁ ବଡ ହେଲେ ଖାଇବୁ କିନ୍ତୁ ମୁଁ ଜିଦି କରି କହିଲି ମୁଁ ଆଜି ପାନ ଖାଇବି । ସେ ଟିକିଏ ପାନ ସହିତ ଗୁଆ ମୋ ପାଟିରେ ଗୁଞ୍ଜି ଦେଇ କହିଲେ ରହ, ତୋ ମାଆ କୁ କହିଦେବି, ତୁ ପାନ ଖାଉଛୁ । ସେ କିନ୍ତୁ ମୋ ବିରୁଦ୍ଧରେ ମୋ ମାଆକୁ କୌଣସି କଥା କହିଥିବାର ମୁଁ ଜାଣେ ନାହିଁ । ବେଳେ ବେଳେ ସେ କୁହନ୍ତି ମୁଁ ଶୁଣିଛି, ଶାନ୍ତା ତୋ ପୁଅ ଦୁଷ୍ଟ ହେଲେ କଣ ହବ, ଭଲ ପାଠ ପଢିବ, ଭଲ ମଣିଷଟିଏ ହେବ । ମୋ ମାଆ ହସିଦେଇ

କୁହେ, ମୂଷିନାନୀ ତୁମ ତୁଣ୍ଡ ସ୍ରୁ ତୁଣ୍ଡ ହେଉ। ତୁମ ଆଶିର୍ବାଦ ତା ଉପରେ ଥାଉ।

ମୂଷିନାନୀ ଘର ଭିତରକୁ ଚାଲିଗଲେ, ମୁଁ ମଧ୍ୟ ତାଙ୍କ ପଛେ ପଛେ ଘର ଭିତରକୁ ଗଲି। ସେ ତାଙ୍କ ପାନ ପେଡି ରଖିଦେଇ କହିଲେ ଆ....ଏଇଠି ବସ। ମୋର କିନ୍ତୁ ଇଛା ତାଙ୍କର ଘରସବୁ ବୁଲି ଦେଖିବି, ତାଙ୍କ ବିଷୟରେ ଅଧିକ ଜାଣିବି। ହଠାତ୍ ଯାଇ ତାଙ୍କ ଠାକୁର ଘର ଭିତରେ ପଶିଗଲି, ସେ ପାଟି କରି କହିଲେ, ଛୁଇଁବୁ, ଛୁଇଁବୁ, ସେଠାରେ ଠାକୁର ଅଛନ୍ତି, ଚଞ୍ଚଳ ସେଠାରୁ ପଳେଇଆ। ମୁଁ କିନ୍ତୁ ସବୁ କିନିଷ ଗୁଡିକୁ ନିଠେଇ ନିଠେଇ ଦେଖୁଥିଲି। ଅନେକ ଦେବାଦେବୀଙ୍କ ଫଟୋ ମଧ୍ୟରେ ଥିଲେ ରାଧାକୃଷ୍ଣଙ୍କ ଯୁଗୋଳ ମୁର୍ତ୍ତୀ। ଅଷ୍ଟଧାତୁରେ ତିଆରି। ତ୍ରିଭଙ୍ଗି ଛନ୍ଦରେ ହାତରେ ବଇଁଶୀ ଧରି ଛିଡା ହୋଇଛନ୍ତି ଶ୍ରୀ ରାଧାଙ୍କ ସହିତ। ଫୁଲ ଚନ୍ଦନରେ ସୁ-ଶୋଭିତ। ପାଖରେ ଥୁଆହୋଇଛି ଚନ୍ଦନ ପେଡି, ଧୂପ କାଠି, ଶଙ୍ଖ, ଧୂପଦାନୀ, ଦୀପଦାନୀ, ଫୁଲଚାଙ୍ଗୁଡି, ଘିଅଡିବା ଓ ସଳିତା ଇତ୍ୟାଦି। ଅଗୁରୁ ଚନ୍ଦନରେ ଘର ଭିତରଟା ମହ ମହ ବାସୁଥାଏ। ମୂଷିନାନୀ ଦ୍ୱାର ମୁହଁରୁ ମୋ ହାତ ଧରି ନେଇ ପାଖରେ ବସାଇ କହିଲେ, କଣ ଦେଖିଲୁ କହ? ମୁଁ କହିଲି ଠାକୁରଙ୍କୁ ଦେଖିଲି। ସେ କହିଲେ ଅଗାଧୁଆ, ହାତ ଗୋଡ ନ ଧୋଇ ଠାକୁର ଘରେ ପଶିଲେ ଠାକୁର ରାଗିଯିବେ। ମୁଁ କିଛି ନ କହି ଚୁପ୍ ରହିଲି, ସେ ମଧ୍ୟ କିଛି ନ କହି ଚୁପ୍ ରହିଲେ। ମୁଁ କହିଲି ମୂଷିନାନୀ ତୁମେ ଆଜି କଣ ଖାଇଛ? ସେ କହିଲେ ଭାତ୍, ଡାଲି, ତରକାରୀ, ଭଜା, ଖଟା, ବାଇଗଣ ଭର୍ତ୍ତା ଓ ଶାଗ ଇତ୍ୟାଦି। କାହିଁ ତୁମ ପେଟ ତ ପୁରିନାହିଁ, କହୁ କହୁ ତାଙ୍କ ଶାଢୀ ଭିତରେ ହାତ ପୁରେଇ ତାଙ୍କ ପେଟ ଅଣ୍ଡାଳିବାକୁ ଲାଗିଲି। ସେ ଛାଟିପିଟି ହୋଇ କହିଲେ, ସତରେ ତୁଟା ଭାରି ଦୁଷ୍ଟ, ମୁଁ ପିନା ମିଛିମିଛିକା ତୋତେ ଦୁଷ୍ଟ ବୋଲି କହୁଥିଲି। ମୁଁ କହିଲି ତୁମେ ଯେ ସେଦିନ ମୋ ପେଟ ଉପରେ ହାତ ରଖି ପ୍ରଶ୍ନ କରିଥିଲ, ମୁଁ କଣ ଖାଇଛି ବୋଲି। ସେ ମୋ କଥା ଶୁଣି ଠୋ ଠୋ ହସିଥିଲେ। ମୋ ଅବୁଝା ମନ କାହିଁକି ତାଙ୍କର ରୋଷେଇ ଘର ଆଡକୁ ଯିବାକୁ ମୋତେ ବାଧ୍ୟକଲା। ମୁଁ ତାଙ୍କ ରୋଷେଇ ଘରକୁ ପଶିବାକୁ ଯାଉଥିବା ବେଳେ ସେ ଦୌଡି ଆସି ମୋତେ ଧରି ପକେଇ କହିଲେ, ଆରେ ଇଏ

ସବୁ ମାରା କରିଦେବ ।  ଆରେ ଏଇଟା ପରା ମୋ ରୋଷେଇଘର, ଈଷାଣ । ଧୂଳି ଧୂସରିତ ହୋଇ ମଇଳା ପେଣ୍ଟ ପିନ୍ଧି ପଶିଯାଉଛୁ କିମିତି? ମୁଁ ଜିଦି କଲି ରୋଷେଇ ଘର ବୁଲି ଦେଖିବି । ସିଏ ମୋର ଗୋଡ ହାତ ଧୋଇ ଦେଇ କହିଲେ, ଲଙ୍ଗଳା ହୁଅ । ଲଙ୍ଗଳା ହେବା କଥା ଶୁଣି ମୋତେ ଭାରି ଲାଜ ମାଡିଲା ।

ସେ ହସିଦେଇ କହିଲେ, କେଡେ ମର୍ଦ୍ଦଟା ଯେ ଲଙ୍ଗଳା ହେବାକୁ ଲାଜ ଲାଗୁଛି, ପୁଣି କଣ  ନା ଦେଖିବାକୁ ଚାହୁଁଛି ମୋ ଭାତ ହାଣ୍ଡି । ସିଏ ଜବରଦସ୍ତ ମୋତେ ଲଙ୍ଗଳା କରିଦେଇ କହିଲେ, ଏବେ ଯା ଦେଖିବୁ ମୋ ଭାତ ହାଣ୍ଡି, ଚୁଲି ଓ ମୋ ହାଣ୍ଡିଶାଳ । ମୁଁ ରୋଷେଇ ଘରଭିତରକୁ ପଶିଯାଇ ଦେଖିଲି ଗୋଟିଏ ଛୋଟିଆ ମାଟି ହାଣ୍ଡି,  ମାଟିହାଣ୍ଡି ଉପର ଘୋଡଣି ଖୋଲି ଦେଖିଲି ଅଳ୍ପ ପରିମାଣ ଭାତରେ ପାଣି ତଳା ହୋଇଛି । ଆଉ ଗୋଟିଏ ମାଟି ପାତ୍ରରେ ସିଝା ଆଳୁ ଓ କିଛି ଶାଗ । ମୁଁ କହିଲି ମୂଷିନାନୀ ଇଏତ ମାତ୍ର ସିଝା ଆଳୁ ଓ ଶାଗ । ଡାଲି, ତରକାରୀ, ଭଜା, ଖଟା ଇତ୍ୟାଦି କାହିଁ । ସେ ଗମ୍ଭୀର ହୋଇ ଚୁପ୍ ରହିଲେ, କହିଲେ ମୋ ହାଣ୍ଡିଶାଳକୁ ଆଉ ବେଶି ଦେଖନା, ଚାଲିଆ ଏଥର । ମୁଁ ଜାଣିଗଲି ମୂଷିନାନୀ ମୋତେ ମିଛ କହିଥିଲେ । ତାଙ୍କର ନିତି ଦିନିଆ ଖାଦ୍ୟ ଇମିତି । ତାଙ୍କର ଶୃଙ୍ଗାର ପ୍ରତି ଆଗ୍ରହ ଅଛି ନା ଖାଦ୍ୟ ପ୍ରତି ନା ନିଜଦେହ ପ୍ରତି । ତାଙ୍କର ସବୁଥାଇ କିଛି ନାହିଁ । ସେ ଚାହାନ୍ତି ଯେତେ  ଜଲଦି ଏ ଦେହଟା ଜଳିଯିବ, ସେ ମୁକ୍ତି ପାଇଯିବେ ଏ ସଂସାରରୁ ଚିରଦିନ ପାଇଁ  । ସେ ଡାକିଲେ ମୋତେ, କହିଲେ ତୁ ତ ମୋ ଘର ସବୁ ବୁଲି ଦେଖିଲୁ ଏଥର କହ କଣ ଖାଇବୁ । ମୁଁ ନାହିଁ କରୁଥିଲି ସେ ଜବରଦସ୍ତ ଗୋଟିଏ ଲଡୁ ମୋ ହାତରେ ଧରେଇ ଦେଇ କହିଲେ ନେ ଖାଇଦେ, ଲଡୁଟିକୁ ହାତରେ ଧରି ଖାଇବି କି ନାହିଁ ଭାବୁଥାଏ, ସେ ଆଉ ଗୋଟିଏ ଲଡୁ ଆଣି ମୋ ବାମ ହାତରେ ଧରେଇ ଦେଇ କହିଲେ, ମୁଁ ଜାଣିଛି ତୁ ଗୋଟିଏ ନେବୁନାହିଁ, ଦୁଇଟି ନବୁ । ମୁଁ ଲାଜରେ କିଛି କହି ପାରିଲି ନାହିଁ । ସେ କହିଲେ ଖାଇନୁ, ଖାଇଦେ । ମାଆ ଡାକିଲା, ମୋ ନାଁ ଧରି,  ମୁଁ ସେଠାରୁ ଦୌଡି ପଳେଇଲି , ସେ ହସୁଥିଲେ ।

ତା ପରଦିନ ମୁଁ ମୂଷିନାନୀ ଘରକୁ ଆଉ ଯାଇ ନାହିଁ । ମାଆ

କହିଲା ଆସନ୍ତା କାଲି ଆମେ ଗାଁକୁ ଚାଲିଯିବା । ଆଇ ବରାଦ କରୁଥିଲେ ମାଆ ପାଇଁ ଶାଢୀ ଓ ମୋ ପାଇଁ ସାର୍ଟ ପେଣ୍ଟ। ମାମୁଁ ଘରେ ଆଜି ଶେଷ ଦିନ । ସନ୍ଧ୍ୟା ହେବାକୁ ଆଉ ଅଳ୍ପ ସମୟ ବାକି ଅଛି । ଦାଣ୍ଡ ଦୁଆର ମୁହଁକୁ ଆସି ଦେଖିଲି ମୂଷିନାନୀଙ୍କ ଦାଣ୍ଡ କବାଟ ମେଲା ହୋଇଛି, ମୂଷିନାନୀ ବାରଣ୍ଡାରେ ନାହାନ୍ତି । ମୁଁ ଧିରେ ଧିରେ ଦୁଆର ମୁହଁରେ ଛିଡା ହୋଇ ଡାକିଲି, ମୂଷିନାନୀ, ମୂଷିନାନୀ , କେହି ଶୁଣିଲେ ନାହିଁ ।ଧିରେ ଧିରେ, ଅଗଣା ଡେଇଁ ଘର ଭିତରକୁ ପଶିଲି । ଶୋଇବା ଘର ଭିତରେ ସପ ପକେଇ ଶୋଇଛନ୍ତି ମୂଷିନାନୀ । ଘର ଦୁଆର ମୁହଁରେ ଛିଡା ହେଲି । ସେ ଡାକିଲେ ସେଠି ଛିଡା ହୋଇଛୁ କାହିଁକି, ଆ ଭିତରକୁ ଆ, ମୁଁ ଭିତରକୁ ଗଲି, ସେ ମୋତେ ତାଙ୍କ ପାଖରେ ବସେଇଲେ । ମୋ ହାତ ପାପୁଲିଟାକୁ ନେଇ ତାଙ୍କ ମୁଣ୍ଡରେ ମୁହଁରେ ଛୁଆଁଇ ଦେଇ କହିଲେ ଗରମ ଲାଗୁଛି ନା, ମୁଁ କହିଲି ହଁ, ତୁମକୁ ତ ବହୁତ ଜ୍ୱର, ସିଏ କହିଲେ ଭଲ ହୋଇଛି ଜ୍ୱର ହେଉ, ଯେତେ ଜ୍ୱର ହେବ ହେଉ । ମୁଁ କିଛି ବୁଝି ପାରୁ ନଥାଏ । ସେ କହିଲେ ତୋ ମାଆ ସହିତ ତୁ କଣ ଆସନ୍ତା କାଲି ତୁମ ଗାଁକୁ ଚାଲି ଯାଉଛ? ମୁଁ କହିଲି ହଁ। ସେ ଆଉ କିଛି କହିଲେ ନାହିଁ। ସେ କହିଲେ ତୁ ଟିକିଏ ପାଣି ଆଣି ଦେବୁ, ମୁଁ ପିଇବି । ମୁଁ ଗ୍ଲାସରେ ପାଣି ଆଣି ଦେବାରୁ ସେ ପାଣି ପିଇ ପୁଣି ସପ ଉପରେ ଶୋଇପଡିଲେ, କହିଲେ ତୁ ପାରିବୁ, ଟିକିଏ ମୋ ଗୋଡ ହାତ ଚିପି ଦେବୁ । ମୁଁ ତାଙ୍କ ଗୋଡ ଚିପିବାକୁ ଆରମ୍ଭ କଲି । ଦେହରେ କେବଳ ଶାଢୀଟା ମାତ୍ର , ଶାୟା, ବ୍ଲାଉଜ କିଛି ନାହିଁ । ଦେଖିଲି ଆଣ୍ଠୁ ତଳେ ଓ ଆଣ୍ଠୁ ଉପରକୁ ବଡ ବଡ ଧଳା ଦାଗମାନ । । ଏତେ ବଡ ଧଳା ଚିହ୍ନ ଦେଖି ମୁଁ ଡରିଗଲି । ସିଏ କହିଲେ ଡରନା, ତୋର କିଛି ହେବ ନାହିଁ , ଚିପିଦେ ମୋ ମୁଣ୍ଡ, ମୋ ଗୋଡ ଓ ମୋ ହାତ। ମୁଁ ସିମିତି ଚିପି ଚାଲିଥାଏ ।ମଝିରେ ମଝିରେ ସେ କହୁଥାନ୍ତି ଜୋର ଚିପ୍, ଖୁବ୍ ଜୋର । ମୋର ଛୋଟ ହାତର ଛୋଟ ପାପୁଲିରେ ଏତେ ଶକ୍ତି କେଉଁଠି ଅଛି ଯେ ସିଏ ଚାହୁଁଥିବା ମୁତାବକ ଚିପି ପାରିବି । ଶେଷରେ ସିଏ କହିଲେ ତୁ ପାରୁନାହୁଁ , ଛୋଟ ପାପୁଲି ତୋର, ମୋ ଗୋଡ ଉପରେ ତୁ ଛିଡା ହୋଇ ଯାଆ, ମୁଁ ତାଙ୍କ ଗୋଡ ଉପରେ ଛିଡା ହୋଇଗଲି, ମାଡି ମାଡି ଆଣ୍ଠୁ ଉପର ପର୍ଯ୍ୟନ୍ତ ଆସେ ପୁଣି ମାଡି ମାଡି ପାଦ ପାଖକୁ ଫେରିଯାଏ । ସିଏ ମୁହଁ ମାଡି ଶୋଇଥାନ୍ତି । କିଛି

ସମୟ ପରେ କହିଲେ ହୋଇଗଲା, ହୋଇଗଲା, ମୋ ମୁଣ୍ଡ ପାଖକୁ ଆସି ମୁଣ୍ଡ ଟିକିଏ ଚିପି ଦେ। ମୁଁ ମୋର ସମସ୍ତ ଶକ୍ତି ଖଟେଇ ତାଙ୍କ ମୁଣ୍ଡ ଚିପିବାକୁ ଲାଗିଲି। ସିଏ କହିଲେ ବହୁତ ଭଲ ଲାଗୁଛିରେ ତୁ ମୋର ସେବା କଲୁ। ସେତିକି ଥାଉ ତୁ ଏବେ ଯାଆ... ଘରକୁ ଯାଆ... । ମୁଁ ସେଠାରୁ ପଳେଇ ନ ଆସି କିଛି ସମୟ ପର୍ଯ୍ୟନ୍ତ ତାଙ୍କ ଗୋଡ ପାଖରେ ଛିଡା ହୋଇ ତାଙ୍କ ମୁହଁକୁ ଅନେଇଥାଏ । ସିଏ ଆଖି ବୁଜି ଶୋଇଥାନ୍ତି। ମୁଁ ଲକ୍ଷକଲି ତାଙ୍କ ଆଖିରୁ ଲୁହ ଝରି ଯାଉଥାଏ।

ସିଏ କହୁଥାନ୍ତି ହେ କୃଷ୍ଣ, ଆଉ କାହିଁକି ମୋତେ ଠକୁଛ, ନବ ତ ଚଞ୍ଚଳ ନେଇଯାଅ ଆଉ ପାରିକି। ଏଠି ବହୁତ କଷ୍ଟ, ମୁଁ ଆଉ ବଞ୍ଚିବାକୁ ଚାହୁଁନି, ହେ କୃଷ୍ଣ, ହେ ଲୀଳାମୟ ପୁରୁଷ, ତୁମେ ତ କେତେ ପାପୀ, ତାପୀ ମାନଙ୍କୁ ଉଦ୍ଧାର କରିଛ, ଦ୍ରୌପଦୀଙ୍କୁ କେତେ ବିପଦରୁ ଉଦ୍ଧାର କରିଛ, ବସ୍ତ୍ର ଦେଇ ଲଜ୍ଜା ନିବାରଣ କରିଛ, ସୁଦାମାର ଦୁଃଖ ଦାରିଦ୍ର୍ୟ ଭଞ୍ଜନ କରିଛ, କୁବୁଜା କୁ ସୁନ୍ଦରୀ ନାରୀର ସ୍ୱରୂପ ଦେଇଛ, ଅନ୍ଧକୁ ଚକ୍ଷୁ ପ୍ରଦାନ କରିଛ, ତୁମେ ମୋ ବେଳକୁ କାହିଁକି ଏତେ ନିଷ୍ଠୁର ହେଉଛ। ତୁମେ ତ ସେଇ ଲବଣୀ ଚୋର ଦୁଷ୍ଟ, ତୁମେ ତ ଗୋବର୍ଦ୍ଧନଧାରୀ, ଗୋପାଙ୍ଗନାମାନଙ୍କ ବସ୍ତ୍ର ଚୋର, ତୁମେ ଛଳିଆ ଠାକୁର, ମୋତେ ଆଉ କାହିଁକି ପରୀକ୍ଷା କରୁଛ। ତୁମ ପରୀକ୍ଷାରେ ପ୍ରତିଥର ପ୍ରତି ସୋପାନରେ ଅକୃତକାର୍ଯ୍ୟ ହେଉଛି ମୁଁ। ମୁଁ ଆଉ ଚାହୁଁ ନାହିଁ ଏଠି ଦଣ୍ଡେ ରହିବାକୁ, ନଟବର ମୋତେ ନେଇଯାଅ ତୁମ ପାଖକୁ।

ସିଏ ଜାଣି ନଥିଲେ ଯେ ସେପର୍ଯ୍ୟନ୍ତ ମୁଁ ସେଠି ଠିଆ ହୋଇ ସବୁ ଶୁଣୁଛି। ଲୁହରେ ସପଟା ପୁରା ଓଦା ହୋଇ ଯାଇଥିଲା। ତାଙ୍କ ମୁଖ ନିସୃତ ଶବ୍ଦ ଗୁଡିକ ଯିମିତି ମୋତେ ଭେଦ କରି, କାନ୍ଥ ବାଡ ଭେଦ କରି ମହାଶୂନ୍ୟରେ ମିଶି ଯାଉଥିଲା। ସେ ପୁଣି ଆଉଥରେ ବିଳିବିଳେଇ ଉଠି କହିଲେ, ହେ କୃଷ୍ଣ, କପଟି, ଦୁଷ୍ଟ, ତୁମେ ଆଉଥରେ ତୁମ ହାତ ମୋ ଦେହରେ ବୁଲାଇ ଦିଅ, ମୋତେ ଟିକିଏ ଆଉଁସି ଦିଅ, ମୋତେ ପାଣି ଟୋପାଏ ମୋ ମୁହଁରେ ଦିଅ। ମୁଁ ଭାବୁଥିଲି ମୁଁ ସେହି କୃଷ୍ଣରୂପୀ ଜଣେ ଦୋଷୀ ଓ ଅପରାଧୀ। କୃଷ୍ଣ ଯଦି ସ୍ୱୟଂ ଭଗବାନ, ଅନ୍ତର୍ଯ୍ୟାମୀ ସିଏ କାହିଁକି ମୂଷିନାନୀ କଥା ଶୁଣୁନାହାନ୍ତି ? ମୁଁ କଣ କରିବି କିଛି ଭାବି ପାରୁନଥିଲି।

ମନେ ମନେ ମୋର ଭଗବାନ ଶ୍ରୀକୃଷ୍ଣଙ୍କ ଉପରେ ଭାରି ରାଗ ଜନ୍ମ ହେଲା । ସତରେ ଭାରି ଦୁଷ୍ଟ ସିଏ , ଭାରି ମାୟାବୀ ଓ କପଟୀ । ଇମିତି ଯିଏ ଯେତେ ଡାକିଲେ ବି ସେ କୁଆଡେ କାହାରି କଥା ଶୁଣନ୍ତି ନାହିଁ, କେବଳ ଦୁଃଖ ହିଁ ଦିଅନ୍ତି, ଦୁଃଖ.... ଅସରନ୍ତି ଦୁଃଖ, ମଲା ପର୍ଯ୍ୟନ୍ତ । ମୁଷିନାନୀଙ୍କ ଆଖିରୁ ବୋହିଯାଉଥିବା ଲୁହ ଦେଖି ମୁଁ ମଧ୍ୟ ମୋ ଆଖିରୁ ପାପୁଲିରେ ଲୁହ ପୋଛୁଥିଲି, ମନେ ମନେ କହୁଥିଲି ମୁଷିନାନୀ ତୁମେ ଭଲ ହୋଇଯାଅ, ତୁମେ ଖୁବ୍ ଜଲ୍‌ଦି ଭଲ ହୋଇଯାଅ ।

ମୁଁ ଘରକୁ କେତେବେଳେ ପଳେଇ ଆସିଛି ଜାଣେ ନାହିଁ । ମାଆ କହିଲା ଏତେବେଳ ପର୍ଯ୍ୟନ୍ତ କେଉଁଠି ଥିଲୁ? ମୁଁ ଚୁପ୍ ରହିଲି । ମାଆ କୁ କୌଣସି ଉତ୍ତର ଦେଲି ନାହିଁ । ତା ପରଦିନ ସକାଳେ ବସ୍ ରେ ଯିବା ପାଇଁ ମାଆ ଜିନିଷ ପତ୍ର ସବୁ ସଜାଡୁଥିଲା । ରାତି ପାହିଲେ ଗାଁକୁ ଚାଲିଯିବା ।

ଗାଁକୁ ଆସିବା ପରେ ମୁଷିନାନୀଙ୍କ କଥା ସମ୍ପୂର୍ଣ୍ଣରୂପେ ଭୁଲି ଯାଇଥିଲି । ଏହାପରେ ଅନେକ ଥର ମାମୁଁ ଘରକୁ ଯାଇଛି ମୁଁ କିନ୍ତୁ ଭରସି କରି ମୁଷିନାନୀ କଥା କାହାକୁ ପଚାରିନାହିଁ । କେହି ମଧ୍ୟ କିଛି କୁହନ୍ତି ନାହିଁ ତାଙ୍କ ବିଷୟରେ । ତାଙ୍କ ବିଷୟରେ ପଚାରିଲେ ବୋଧହୁଏ କିଏ ମନରେ ଭାବିବ କାହିଁକି ଗୋଟିଏ କୁଷ୍ଠରୋଗରେ ଆକ୍ରାନ୍ତ ହୋଇଥିବା ଅଲଜ୍ଜା ମଣିଷଟା ବିଷୟରେ ଇଏ ଏତେ ଆଗ୍ରହ ପ୍ରକାଶ କରୁଅଛି ? ସିଏ କଣ କଣେ ମନେ ରଖିବାର ବ୍ୟକ୍ତିତ୍ୱ । ତାକୁ ମନେ ରଖିବା ଲାଭ କଣ । ମୁଷିନାନୀଙ୍କର ତା ପରେ କଣ ହେଲା ମୁଁ ଆଜି ପର୍ଯ୍ୟନ୍ତ ଜାଣେ ନାହିଁ । କେବଳ ଏତିକି ମାତ୍ର ମୋର ମନେ ଅଛି ସେ ମୋ ଭିତରେ ଯିମିତି କହୁଛନ୍ତି, ହେ କୃଷ୍ଣ, ହେ ଦୁଷ୍ଟ, ହେ ଲୀଳାମୟ, ନଟିଆ ନାଗର ମୋ ଆଡକୁ ଟିକିଏ ହାତ ବଢେଇ ଦିଅ, ମୁଁ ଆଉ ତୁମକୁ କିଛି ମାଗୁନାହିଁ ।



# ଅବସର

ମଫସଲ ଗାଁ , ଗାଁରେ ଦୁଇ ଚାରିଜଣଙ୍କୁ ଛାଡି ଦେଲେ ପ୍ରାୟ ସମସ୍ତଙ୍କର ଚାଳ ଘର । ଚାରିଆଡେ ବଡ ବଡ ଗଛ, ବାଉଁଶ ବଣ, ଗୋଟିଏ ମାତ୍ର ରାସ୍ତା , ଖରା ଦିନେ ଖଣ୍ଡିଆ ଭୂତ ଧୂଳି ଉଡେଇ ଉଡେଇ ଅନେକ ଦୂରକୁ ଚାଲି ଯାଏ, ପୁଣି ବର୍ଷା ଦିନେ କାଦୁଅ ପଚ ପଚ । ଗାଁର ମନ୍ଦିର , କ୍ଲବ ଘର , ଗାଁ ମୁଣ୍ଡର ସ୍କୁଲ ଘର , ବିଲ ବଣ , କୂଅ, ପୋଖରୀ ଓ ପୋଖରୀ ହୁଡାରେ ଛିଡା ହୋଇଥିବା ବର ଅଶ୍ୱତ୍ଥ ଗଛ ସବୁ ସୁନ୍ଦର ଦେଖାଯାଏ । ଗାଁର ପରିବେଶ ଖୁବ୍ ଆକର୍ଷଣୀୟ , ଓ ମନମୁଗ୍ଧକର ଅଟେ । ଗାଉଁଲି ସଭ୍ୟତା ସହର ସଭ୍ୟତା ଠାରୁ ଅନେକ ଦୂରରେ ।

ନିଜ ଚାଳ ଘର ବାରଣ୍ଡାରେ ବସିଛନ୍ତି ସମରେନ୍ଦ୍ର ବାବୁ । ନିଜେ ଚିନ୍ତା ମଗ୍ନ , ଏଇଟା ତାଙ୍କର ଜନ୍ମ ସ୍ଥାନ, ଏଇଠି ତାଙ୍କର ବାଲ୍ୟ ଓ କୈଶର ସମୟ କଟିଛି । ଅତୀତର ସେଇ ଦିନ ଗୁଡିକୁ ମନେ ପକାଉଛନ୍ତି ସେ, କିନ୍ତୁ ନିଜ ଗାଁରେ ସେ ନିଜେ ଏତେ ଅପରିଚିତ କାହିଁକି ? ଘରୁ ଦାଣ୍ଡକୁ ବାହାରି ପଡିଲେ କି ପିଲା କି ବୁଢା ତାଙ୍କୁ ପ୍ରଶ୍ନିଳ ଦୃଷ୍ଟିରେ ଦେଖୁଛନ୍ତି । ତାଙ୍କ ସହିତ କେହି ପଦେ ହେଲେ କଥା କହୁ ନାହାନ୍ତି । କୁଳ ଭୂଆଷୁଣି ଗୁଡାକ ଆଡେଇ ହୋଇ କିଛି ଦୂର ଚାଲି ଯାଇ ବୁଲି ପଡି ତାଙ୍କୁ ପଛ ପଟୁ ଦେଖୁଛନ୍ତି । ଗାଁର ପିଲା ଗୁଡିକ ତାଙ୍କୁ ଦେଖି ଦୁରେଇ ଯାଉଛନ୍ତି ଓ ଦୂରରେ ଛିଡା ହୋଇ ପାଟିରେ ଆଙ୍ଗୁଳି ପୁରେଇ ଜକଜକା ଭଳିଆ ତାଙ୍କୁ ଅନଉଛନ୍ତି । ସମରେନ୍ଦ୍ର ବାବୁ ଭାବୁଛନ୍ତି ସତରେ ସେ କଣ ଜଣେ ବିଦେଶୀ ନା ନବାଗତ ? ଲୋକମାନଙ୍କର ଏତାଦୃଶ ବ୍ୟବହାର ତାଙ୍କୁ ଭଲ ନ ଲାଗିବାରୁ ସେ ପ୍ରାୟ ଆଉ ଘରୁ ନ ବାହାରି ଦାଣ୍ଡ ପିଣ୍ଡାରେ ଚଉକି ପକେଇ ବସନ୍ତି ଓ ଖବର କାଗଜ ପଢନ୍ତି , ଚାକର ଟୋକା ବନା ହାତରୁ ଚା ପିଅନ୍ତି ।

ଘରେ ତାଙ୍କର କେହି ନାହିଁ , ତିନି ପୁଅ ବାହାରେ ଚାକିରୀ କରୁଛନ୍ତି । ଘରକୁ ପ୍ରାୟ କେହି ଆସନ୍ତି ନାହିଁ । ଘରେ ସେ ନିଜେ ଏକୁଟିଆ ଓ ବନା

ଚାକର, ତୃତୀୟ ଜଣକ ହେଲା ଗୋଟିଏ ଦେଶୀ ବୁଲା କୁକୁର, କିମିତି ଆସି ରହି ଯାଇଛି ତାଙ୍କ ଘରେ । ବନା କୁହେ ଏଇଟା ଛୋଟ ବେଳରୁ କିମିତି ତା ମାଆ ପାଖରୁ ଖସି ଆସି ଏଇଠି ରହି ଯାଇଛି ଯେ ଯେତେ ବାଡେଇଲେ ବି ଯାଉ ନାହିଁ । ତାକୁ ଖାଇବାକୁ ଦେଲେ ଭଲ, ଖାଇବାକୁ ନ ଦେଲେ ମଧ୍ୟ ଭଲ, ସେଥିରେ ତାର କିଛି ଆପତ୍ତି ନାହିଁ । ବାରଣ୍ଡାର ଗୋଟିଏ କୋଣରେ ଲାଞ୍ଜ ସହିତ ମୁଣ୍ଡ ଗୁଞ୍ଜି ଶୋଇଥିବ । ସମରେନ୍ଦ୍ର ବାବୁ ଦେଖିଲେ ବର୍ତ୍ତମାନ ମଧ୍ୟ ସେଇଟା ସିମିତି ଲାଞ୍ଜ ସହିତ ମୁଣ୍ଡ ଗୁଞ୍ଜି ଶୋଇଛି । ବିଚିତ୍ର ଜନ୍ତୁଟା, ପ୍ରଥମେ ପ୍ରଥମେ ତାଙ୍କୁ ଦେଖି ଭୁକୁ ଥିଲା ଏବେ ଆଉ ତାଙ୍କୁ ଦେଖି ଆଦୌ ଭୁକୁ ନାହିଁ, କେବଳ ଗାଁ ଲୋକ ମାନଙ୍କ ପରି ତାଙ୍କୁ ଏକ ଧ୍ୟାନରେ ଅନେଇ ଥିବ । କି ବିଚିତ୍ର ଚାହାଁଣୀ ତାର , ତା ଚାହାଁଣୀରୁ ତା ମନର କଥା କିଛି ବୁଝି ହୁଏ ନାହିଁ । ସେ ଭାବନ୍ତି ବୋଧହୁଏ କୁକୁର ଟି ତାଙ୍କୁ ଘର ମାଲିକ ହିସାବରେ ଗ୍ରହଣ କରି ପାରୁ ନାହିଁ । ଗାଁକୁ ଆସିବାର ଦୁଇ ଚାରି ଦିନ ପରେ ଯେତେବେଳେ ସେ ବାରଣ୍ଡାରେ ଚଉକି ଉପରେ ବସି ଖବର କାଗଜ ପଢୁଥିଲେ ହଠାତ୍ ତାଙ୍କ ଦୃଷ୍ଟି କୁକୁରଟି ଉପରେ ପଡିଥିଲା । କୁକୁରଟି ତାଙ୍କୁ ଏକ ଧ୍ୟାନରେ ଚାହିଁ ରହିଥିଲା, ସତରେ ଯିମିତି ତାଙ୍କୁ କିଛି କହିବ, ତାର ଚାହାଁଣୀରୁ ତାର ମନର ଭାବକୁସେ ପ୍ରକାଶ କରୁଥିଲା । ଇମିତି ଅନେକ ଥର ଘଟିଛି କିନ୍ତୁ ଦିନେ ସେ କୁକୁର ସହିତ ଆଖି ମେଳେଇ ତାକୁ କିଛି ସମୟ ଚାହିଁ ରହିଲେ , ହଠାତ୍ କୁକୁରଟି ଉଠିପଡି କୁଁ କୁଁ ଶବ୍ଦ କରି ଲାଞ୍ଜ ହଲାଇବାକୁ ଲାଗିଲା । ସେ କିଛି ବୁଝି ପାରିଲେ ନାହିଁ , ମନେ ମନେ ଭାବିଲେ ଏଇଟାକୁ ବୋଧ ହୁଏ ଭୋକ ହେଉଥିବ ତେଣୁ ସେ ଡାକ ପକେଇଲେ , ବନା , ଆରେ.... ବନା ଏଇଟାକୁ ଖାଇବାକୁ ଦେ । ବନା ଘର ଭିତରେ ଥାଇ ଉତ୍ତର ଦେଲା , ବାବୁ ସେଇଟା ପରା ଦେଶୀଟାଏ , ସେଇଟାକୁ ଖାଇବାକୁ ଦେଲେ କେବଳ ଲାଞ୍ଜ ହଲାଇବ ରାତିରେ ଚୋରକୁ ଦେଖିଲେ ଭୋ ଶବ୍ଦଟା ମଧ୍ୟ କରିବ ନାହିଁ, ଦେଖନ୍ତୁ ବର୍ତ୍ତମାନ ମୁଁ ତାକୁ ଖାଇବାକୁ ଦେଉଛି , ଖାଇ ସାରିବା ପରେ ତାର ପତ୍ତା ପାଇବେ ନାହିଁ । ସମରେନ୍ଦ୍ର ବାବୁ ମନେ ମନେ

ଭାବୁଥିଲେ ସତରେ ଦେଶୀ ଓ ବିଦେଶୀ କୁକୁର ମଧ୍ୟରେ କେତେ ତଫାତ୍ । କେବଳ କୁକୁର କାହିଁକି ଦେଶୀ ଓ ବିଦେଶୀର ତଫାତ୍ ମଣିଷ ମଧ୍ୟରେ ବେଶୀ ଅଛି । ମାଲ ମତା ଓ ଗାଡି ମଟରରେ ମଧ୍ୟରେ ତଫାତ୍ । ଏଇଟା କେବଳ ମଣିଷର ରୁଚି ଉପରେ ନିର୍ଭର କରେ । ପ୍ରକୃତରେ ଦେଖିବାକୁ ଗଲେ ଦେଶୀ ଓ ବିଦେଶୀ ମଧ୍ୟରେ କିଛି ପାର୍ଥ୍ୟକ୍ୟ ନାହିଁ । ସେ ଏହା ଭାବୁଥାନ୍ତି , ଇତି ମଧ୍ୟରେ ବନା କୁକୁରଟିକୁ ଖାଇବାକୁ ଦେଇଛି ଏବଂ ସେ ଖାଇ ସାରିବାପରେ ସତକୁ ସତ କୁଆଡେ ଉଭାନ୍ ହୋଇଗଲା ଯେ ସେ ତାର ପତ୍ତା ପାଇଲେ ନାହିଁ ।

ସେ ଅବସର ଗ୍ରହଣ କରିବା ପରେ ପ୍ରଥମ ଥର ପାଇଁ ଗାଁକୁ ଆସିଛନ୍ତି । ଗାଁର ଜମି ଜମା ଭଲ ମନ୍ଦ ବୁଝିବେ , ଫାର୍ମ ହାଉସ୍‌ଟିଏ କରିବେ , କୁକୁଡା ପାଳନ ମାଛ ଚାଷ ଇତ୍ୟାଦି ଯୋଜନାକୁ କାର୍ଯ୍ୟକାରୀ କରିବେ । ଚାକିରୀ ଜୀବନ କାଳରେ ଏ ବାବଦରେ ସେ ଅନେକ ଅଭିଜ୍ଞତା ଅର୍ଜନ କରିଛନ୍ତି କିନ୍ତୁ ସେଥିପାଇଁ କିଛି ଲୋକଙ୍କର ଆବଶ୍ୟକତା ମଧ୍ୟ ରହିଛି । ଗାଁରେ ରହି ସେ ଗାଁ ଲୋକଙ୍କ ସହିତ ଆଦୌ ମିଶି ପାରୁ ନାହାନ୍ତି , ଗାଁ ଲୋକ ମଧ୍ୟ ତାଙ୍କୁ ସହଜରେ ଗ୍ରହଣ କରି ପାରୁନାହାନ୍ତି । ଏପରି ଏକ ଖାପଛଡା ପରିସ୍ଥିତିକୁ ନେଇ ସେ କିମିତି ଗାଁରେ ରହି ପାରିବେ ।

ଇମିତି କିଛିଦିନ ବିତିଗଲା , ଦିନେ ସେ ବସି ବସି ଭାବିଲେ ଥରେ ନିଜ ଜମି ଗୁଡାକ ଉପରେ ଆଖି ପକେଇଲେ ଭଲ ହୁଅନ୍ତା । ତେଣୁ ଦିନେ ସେ ସକାଳୁ ସକାଳୁ ବାହାରି ପଡିଲେ ମର୍ଣିଂ ୱାକ୍ ହେବ ଓ ଜମି ଦେଖା ମଧ୍ୟ ହେବ । ଘର ପାଖରୁ ଜମି ଯଦିଓ ବେଶି ଦୂର ନୁହେଁ , ତଥାପି ଗାଁ ମୁଣ୍ଡ ପାର ହୋଇ ପଦ୍ମ ପୋଖରୀ ହୁଡା ଅତିକ୍ରମ କଲା ପରେ ଯାଇ ପଡିବ ତାଙ୍କ ଜମି । ସେ ଏକ ମୁହାଁ ହୋଇ ଚାଲିଛନ୍ତି ଜମି ଆଡକୁ । ଗାଁ ମୁଣ୍ଡ ଟପି ପଦ୍ମ ପୋଖରୀ ହୁଡାରେ ପାଦ ଥୋଇଛନ୍ତି । ଦୁଇ ଚାରି ଜଣଙ୍କୁ ଛାଡି ଦେଲେ ପୋଖରୀଟା ଶୁନ୍‌ଶାନ । ପିଲାଦିନ କଥା ମନେ ପଡିଯାଉଛି ତାଙ୍କର । କାହିଁ ସେ ଦିନର

କଳା ଭଅଁର ପାଣି, ସେ ଦିନର ମାଛ । ପୋଖରୀରେ ଗାଧୋଉ ଗାଧୋଉ ଦିନେ ସେ ପାଣିରେ ବୁଡିଯାଉଥିବା କଥା ତାଙ୍କର ସ୍ପଷ୍ଟ ମନେ ଅଛି । ଅନେଇ ଥିଲେ ଏକ ଧ୍ୟାନରେ ପୋଖରୀ ମଝିରେ ପୋତା ଯାଇଥିବା ମାଲ ଖୁଣ୍ଟିକୁ । ପଛରୁ ହଠାତ୍ କିଏ ଜଣେ ଡାକିଲା ଆରେ ବୁଢ଼ା କିରେ , ମୁହଁ ଫେରେଇ ଦେଖିଲେ ପୋଖରୀ ହୁଡାରେ ଘୋଡେଇ ଘାଡେଇ ହୋଇ ଜୀର୍ଣ୍ଣଶୀର୍ଣ୍ଣ ବୁଢ଼ାଟି, ବୟସ ଅଶୀରୁ ଊର୍ଦ୍ଧ୍ୱ ହେବ । ସେ ହଠାତ୍ ଚିହ୍ନି ପାରିଲେ ନାହିଁ । ହଁ, ବୁଢ଼ା ତାଙ୍କର ପିଲାଦିନର ଡାକ ନାଁ । ତାଙ୍କର ଜେଜେ ମା ତାଙ୍କୁ ବୁଢ଼ା ବୋଲି ଡାକୁଥିଲେ ସ୍ନେହରେ । ଅନେକ ଦିନ ହେଲା ବ୍ୟବହୃତ ହୋଇ ନ ଥିବା ବୁଡା ଶବ୍ଦଟା ତାଙ୍କୁ ଭଲ ଲାଗିଲା ନାହିଁ । ସେ କିଛି ନ କହି ଛିଡା ହୋଇଗଲେ । ଚାଦରରେ ସର୍ବାଙ୍ଗ ଆବୃତ ହୋଇଥିବା ବୁଡା ଟି କହିଲା ଯାଆ, ଯାଉନୁ ଥରେ ଦେଖି ଆସେ, ବାପ ଜେଜେ ବାପ ରଖିଥିବା ସମ୍ପତ୍ତିକୁ । ସହରରେ ବଡ ହାକିମ ଥିଲୁ ଏବେ ସମ୍ପତ୍ତି ବାଡି ନ ଦେଖିଲେ ଆଉ କିଏ ଅଛି ଯେ ଦେଖିବ । ପିଲାଗୁଡିକ ଝିଅ ଯୁଆଡେ ବାହାରେ ଚାକିରୀ କଲେଣି , ତୁ ତ ଏବେ ଅବସର ଗ୍ରହଣ କଲୁଣି । ଗାଁରେ ଜନ୍ମ ହୋଇ ଥିଲେ ସୁଦ୍ଧା ସେ ବୁଡାଟିକୁ ଭଲ ଭାବରେ ଚିହ୍ନି ପାରିଲେ ନାହିଁ । କେବଳ ହୁଁ, ହାଁ ମାରି ସେଠାରୁ ଚାଲିଗଲେ ।

ପିଲାଦିନେ ଦେଖିଥିବା ସେଇ ଜମି, ଆଜି ସେପରି ଦିଶୁ ନାହିଁ । ମାଟିର ଆକର୍ଷଣ ସେ ଅନୁଭବ କରିପାରୁ ନାହାନ୍ତି । ସହରରୁ ଅତି ଉତ୍କଣ୍ଠାର ସହ ଆସି ଗାଁରେ ରହି ଚାଷ ବାସ କରିବା ଆଶା ନେଇ ଜମି ଉପରେ ଯେତେବେଳେ ସିଏ ଠିଆ ହେଲେ ସେତେବେଳେ ଧୀରେ ଧୀରେ ଜମି ପ୍ରତି ତାଙ୍କର ଆସକ୍ତି କମି କମି ଆସୁଥିବାର ସେ ଅନୁଭବ କଲେ । ନିକଟ ଜମିରେ ହଳ ବୁଲାଉ ଥିବା ଦୁଇ ଜଣ ହଳୁଆ ତାଙ୍କୁ ମଝିରେ ମଝିରେ କୌତୁହଳରେ ଚାହୁଁଥିଲେ । ମନରେ ତାଙ୍କର ପ୍ରଶ୍ନ , ଏ ଲୋକଟି କିଏ କୁଆଡୁ ଆସିଲା, ଦିନେ ହେଲେ ଦେଖା ନ ଥିଲା, ହଠାତ୍ କିପରି ଆର୍ବିଭାବ ହେଲା ।

ଚିନ୍ତାରେ ମଗ୍ନ ରହି ସମରେନ୍ଦ୍ର ବାବୁ କେତେବେଳୁ ନିଜ ଜମିର ସୀମା ପାର ହୋଇ ଗଲେଣି ଜାଣନ୍ତି ନାହିଁ । ତାଙ୍କ ପାଦ ଯୁଗଳ ତାଙ୍କୁ ଯିମିତି ଟାଣି ନେଉଛି ସେଇ ପିଲା ଦିନର ସାଥି କାଳିଆ ନାଳ ଆଡକୁ । କାଳିଆ ନାଳ ଚିରସ୍ରୋତା । ଖରା, ବର୍ଷା ସବୁଦିନେ ଏଥିରେ ପାଣି ଥାଏ । ଲୋକମାନେ ଏଥିରୁ ପାଣି ନେଇ ଏବେ ଚାଷ କରୁଛନ୍ତି । ପୂର୍ବରୁ ଉଠାଜଳ ସେଚନର ସୁବିଧା ଯେତେବେଳେ ନ ଥିଲା ସେତେବେଳେ ଏହାର ଜଳ ରାଶି କି ସୁନ୍ଦର ଦେଖା ଯାଉଥିଲା । ତାର ଦୁଇ କୂଳରେ ଥିଲା ଅସଂଖ୍ୟ ଆମ୍ବ ଗଛ । ଜଙ୍ଗଲୀ ଆମ୍ବ ଗଛ, ଖୁବ୍ ଛୋଟ ଛୋଟ ଆମ୍ବ ଫଳେ, ଏବେ କିନ୍ତୁ ସେ ଗୋଟିଏ ହେଲେ ଆମ୍ବ ଗଛ ଦେଖିବାକୁ ପାଇଲେ ନାହିଁ । ତାର ଦୁଇ କୂଳ ଲଣ୍ଡା ହୋଇ ଯାଇଛି । ମଝିରେ ମଝିରେ ମାଟି ଅତଡା ଖସି ପଡିଛି ନଇ ଭିତରକୁ । କେଉଁଠି ପୁଣି କିଏ ବନ୍ଧ ବାନ୍ଧି ତା ଇଚ୍ଛା ମୁତାବକ ପାଣି ଅଟକାଇ ରଖିଛି ଚାଷ କାର୍ଯ୍ୟ ପାଇଁ । ସେ ଦିନର ବୁଦା ବୁଦା କାଶ ତଣ୍ଡି ଘାସର ଚିହ୍ନ ବର୍ଣ୍ଣ ନାହିଁ । ଚାରିଆଡେ ବିବର୍ଣ୍ଣ ଦୃଶ୍ୟ । ପିଲାଦିନେ ଯେଉଁଠି ପହଁରା ପାଣି ଥିଲା, ଏବେ ସେଠାରେ ଆଣ୍ଠୁଏ ପାଣି । ସେ ଛିଡା ହୋଇଛନ୍ତି ନାଳର ହୁଡା ଉପରେ । ସତେ ଯିମିତି କାଳିଆ ନାଳ ଦୁଃଖରେ ତାଙ୍କୁ କହୁଚି, ଦେଖୁନ, ଦେଖ, ଏ ମୋର କି ଅବସ୍ଥା ହୋଇଛି, ତୁମେ ପିଲା ଥିଲା ବେଳେ ମୁଁ ତୁମ ମାନଙ୍କୁ କେତେ ଛୁଇଁଚି ମୋର ନୀଳ ଜଳ ରାଶିରେ, ତୁମେ ମାନେ କେତେ ଖେଳିଚ ମୋ କୂଳରେ, ପହଁରା ଶିଖିଛ ମୋ ଜଳ ରାଶିରେ ମାତ୍ର ବର୍ତ୍ତମାନ ମୋର ଆଉ ସେ କଳେବର ନାହିଁ, ସେହି ନିର୍ମଳ ଜଳ ରାଶି ନାହିଁ । ସେ ନିର୍ମଳତାକୁ ମୁଁ ଆଜି ହଜେଇ ବସିଛି । ଜରା ଜୀର୍ଣ୍ଣ ହୋଇଛି ଆଜି ମୋର ହୃଦୟ । ଦୁଃଖ ସବୁକୁ ବର୍ଣ୍ଣନା କରିବାକୁ ମୋର ଭାଷା ନାହିଁ । ସତେ ଯିମିତି ସମେରେନ୍ଦ୍ର ବାବୁ କାଳିଆ ନାଳର ସବୁ ଅକୁହା କଥା ବୁଝି ପାରୁଥିଲେ, ସେ ଗୋଟିଏ ଦୀର୍ଘ ନିଶ୍ୱାସ ପକେଇ ପୁଣି ଆଗେଇଲେ । ସକାଳ ଯାଇ ସନ୍ଧ୍ୟା ହେବାକୁ ବସିଲାଣି । ସେ ଘରକୁ ଫେରିବା ଭୁଲି ଯାଇଛନ୍ତି ।

କାଳିଆ ନାଳ କୂଳରେ ବୁଲି ବୁଲି ଅତୀତକୁ ମନେ ପକଉଛନ୍ତି , ଘରକୁ ଫେରିବା ଭୁଲିଯାଇଛନ୍ତି ସେ ।

ନଈ ନାଳରେ ବାଙ୍କ ଥାଏ । କାଳିଆ ନାଳରେ ମଧ୍ୟ ବାଙ୍କ ଅଛି । ମଣିଷ ଜୀବନର ବାଙ୍କ ତ ନଈ ଅପେକ୍ଷା ବହୁତ ବେଶୀ ,ତାକୁ ବା ହିସାବ କରୁଛି କିଏ । କାଳିଆ ନାଳର ସେଇ ବାଙ୍କ ପାଖରେ ଯାଇ ଛିଡା ହେଲେ ସେ, ସଂଧ୍ୟା ନଇଁ ଆସୁଛି । ନାଳରେ ଅଳ୍ପ ପାଣି ଥିଲେ ମଧ୍ୟ ସେଇ କଳା ଭଅଁର ଦୃଶ୍ୟ କୁ ଧାରଣ କରିଛି । ନିସ୍ତବ୍ଧତା ମଧ୍ୟରେ କୁଳୁ କୁଳୁ ନାଦ, ଭାରି ମନ ଛୁଆଁ ଏଇ କାଳିଆ ନାଳର କୁଳୁ କୁଳୁ ଶବ୍ଦ । ପଶ୍ଚିମାକାଶରେ ସୂର୍ଯ୍ୟଙ୍କର ଲାଲିମା । ଆସ୍ତେ ଆସ୍ତେ ସୂର୍ଯ୍ୟ ଦେବ ବୁଡି ଯାଇଛନ୍ତି, ଗୋଟିଏ ବିରାଟ ବର୍ତ୍ତୁଳାକାର ବସ୍ତୁ । ଏଇ କ୍ଷୁଦ୍ର ପୃଥୀବୀ ତାଙ୍କର ଦାନରେ ହିଁ ବଞ୍ଚିଛି । ଏଇ କ୍ଷୁଦ୍ର କାଳିଆ ନାଳର ଦାନରେ ତ ଏଇ ଗାଁର ଲୋକେ ବଞ୍ଚିଛନ୍ତି, ହେଲେ ଏଇ ଦାନକୁ ବା ମନେ ପକାଉଛି କିଏ ।ସମସ୍ତେ ସ୍ୱାର୍ଥର ଦାସ, ସମସ୍ତେ ବଞ୍ଚିବେ । ବଞ୍ଚିବା ପାଇଁ ପ୍ରତିଯୋଗିତା ଭଲରେ ହେଉ କି ମନ୍ଦରେ ହେଉ, ଅର୍ଥର ଆବଶ୍ୟକତା ଧଳା ହେଉ କିମ୍ବା କଳା ହେଉ, ପ୍ରଭେଦରେ ସେ ଆଦୌ କିଛି ବୁଝେ ନାହିଁ । ଦିଅ , କେବଳ ଦିଅ, ଭଗବାନଙ୍କୁ ପ୍ରାର୍ଥନା କରୁଛି ଦିନ ଓ ରାତି, ସକାଳେ ଓ ସଞ୍ଜରେ , ହେ ଇଶ୍ୱର ମୋତେ ଦିଅ, ସବୁ କିଛି ଦିଅ, ଯାହା ମୋର ଏ ମାନବୀୟ ପରିକଳ୍ପନା ବାହାରେ ଅଛି ତାକୁ ମଧ୍ୟ ଦିଅ, ମୁଁ ବଞ୍ଚିବାକୁ ଚାହେଁ, ସୁଖରେ ସବୁ ଦିନ, ଦୁଃଖ ର ମୁହଁ ଦେଖିବାକୁ ଆଦୌ ଚାହେଁ ନାହିଁ । ମଣିଷ ଜାଣି ମଧ୍ୟ ଅଜଣା । ମଣିଷର ଜ୍ଞାନ ଥାଇ ମଧ୍ୟ ଅଜ୍ଞାନୀ । ମଣିଷ ସବୁଦିନ ଜାଣି ଶୁଣି କେତେ ଯେ ଭୁଲ କାମ କରୁଛି ତାର ହିସାବ ନାହିଁ କେବଳ ସେ ବଞ୍ଚିବା ପାଇଁ।

କାଳିଆ ନାଳ ତାର ସର୍ବସ୍ୱ ଦାନ କରି ଆସୁଛି ଏଇ ଲୋକ

ମାନଙ୍କ ପାଇଁ, ସେ ଦେଇଛି ଜଳ, ତାର ଦୁଇ କୂଳର ସବୁଜିମାର ବଳୟ, ବାଲି , ମାଟି , ମାଛ , କଙ୍କଡା , ଆହୁରି କେତେ କଣ । ସବୁଦିନ ସମସ୍ତଙ୍କୁ ତାର ଜଳରାଶି ବିଧୌତ କରୁଛି । କି ଶାନ୍ତି ତାର ସେଇ ନୀଳ ଜଳ ରାଶିରେ ଅବଗାହନ କରିବାରେ ।

ଏବେ ଶାନ୍ତିରେ ଶୋଇବା ପାଇଁ ଜୀବନର ଅପରାହ୍ନରେ ଶଶ୍ମାନଟିଏ ତାରି କୂଳରେ ଅଛି । ଜନ୍ମରୁ ମରଣ ପର୍ଯ୍ୟନ୍ତ ସବୁ ଇତିହାସର ମୁକ ସାକ୍ଷୀ ଏଇ କାଳିଆ ନାଳ । ଏଇ କାଳିଆ ନାଳ ହିଁ ତାକୁ ପ୍ରେରଣା ଦେଇଥିଲା ଆଗେଇ ଯିବା ପାଇଁ । କାଳିଆ ନାଳ ସତେ ଯେମିତି ତାଙ୍କୁ କହିଥିଲା ଦେଖୁନ ମୁଁ କିମିତି ବହି ଚାଲିଛି ତଳକୁ , ମୁଁ କଣ କିଛି ବାଧା ବିଘ୍ନ ମାନୁଛି, ମୋର ଲକ୍ଷ୍ୟ କେବଳ ସାଗରରେ ମିଶିବି । ସତେତ କାଳିଆ ନାଳ ସାଗରରେ ହିଁ ମିଶିଛି ମନେ ମନେ ସେ କାଳିଆ ନାଳକୁ ନତ ମସ୍ତକ ହୋଇ ଦଣ୍ଡବତ କଲେ ।

କ୍ରମେ ଅନ୍ଧାର ଘୋଟି ଆସି ଲାଣି । ଘରକୁ ଫେରିବାକୁ ହେବ । ଫେରି ଆସିଛନ୍ତି ସେ ନିଜ ଘରକୁ ଭାରାକ୍ରାନ୍ତ ମନରେ ଅନେକ ଆଶା ଆସକ୍ତି ଓ ଆଶଙ୍କା ନେଇ । କେତେ ପରିବର୍ତ୍ତନ ହୋଇଛି ସତରେ ଏଇ ସହର, ଏଇ ଗାଁ , ନା ଏଇ ମଣିଷ ମାନେ , ମନେ ମନେ ଉତ୍ତର ଖୋଜୁଥିଲେ ସେ । କେତେବେଳେ ସେ ଆସି ନିଜ ଘର ଦ୍ୱାର ମୁହଁରେ ପହଞ୍ଚି ଗଲେଣି ଜାଣନ୍ତି ନାହିଁ । ଘରର ସେଇ ପୋଷା କୁକୁରଟା ଭୁକି ଉଠିଲା, ପ୍ରକୃତିସ୍ଥ ହେଲେ ସେ ।

ବନା ଚା କପ୍ ଟା ହାତକୁ ବଢେଇ ଦେଇ କହିଲା, ବାବୁ କୁଆଡେ ଯାଇଥିଲେ , ନିରୁତ୍ତର ରହିଲେସେ । ଚାକର ପିଲା କଣ ବା ବୁଝିବ, କହିଲେ ମୋ ପାଇଁ ରୁଟି ଦୁଇପଟ , କ୍ଷୀର ଓ ଟିକିଏ ଭଜା କରିଦେବୁ ରାତିକା ପାଇଁ। ମୋତେ ବାରମ୍ବାର ବିବ୍ରତ କରିବୁ ନାହିଁ ।

ସେ ବାହାର ଘରେ ଚଉକି ଉପରେ ବସି ଖବର କାଗଜ

ପୃଷ୍ଠା ଲେଉଟାଉଥାନ୍ତି । କୁକୁରଟା ଟେବୁଲ ତଳେ ଶୋଇଛି ସେ ଜାଣନ୍ତି ନାହିଁ । ବନା କହିଲା ବାବୁ ଆଜି ବହୁତ ଗରମ ଲାଗୁଛି ସିଲିଂ ଫେନଟା ବହୁତ ପୁରୁଣା ହୋଇଗଲାଣି, ଭଲ ବୁଲୁ ନାହିଁ, ବୁଲିଲେ ମଧ୍ୟ ବିଚିତ୍ର ଶବ୍ଦ କରୁଛି । ବନା ଷ୍ଟାଣ୍ଡିଂ ଫ୍ୟାନଟିକୁ ଆଣି ହାଇ ସ୍ପିଡ୍ ରେ ଚଲେଇ ଦେଲା । ଖବର କାଗଜ ସହିତ ଟେବୁଲ ଉପରେ ଥିବା ଅନ୍ୟାନ୍ୟ କାଗଜ ସବୁ ଉଡିଗଲେ ପେପର ୱେଟ୍ ଟା ଟେବୁଲ ଉପରୁ ତଳେ ଶୋଇଥିବା କୁକୁର ଉପରେ ପଡି ଯିବାରୁ କାଉଁ କାଉଁ ଶବ୍ଦ କରି ସେଇଟା ବାହାରକୁ ଦଉଡି ପଳେଇ ଗଲା । ସେ ପାଟି କରି ଉଠିଲେ ବନା .. .. ଆରେ ବନା, ଫ୍ୟାନ ଟାକୁ ବନ୍ଦ କର । ଇଡିଅଟ୍ କାହିଁକା । ଲୋ ସ୍ପିଡ୍ ଦଉନୁ ।ଏକାଥରେ ହାଇ ସ୍ପିଡ୍ । ବନା କିଛି ବୁଝି ପାରୁ ନଥାଏ। ସିମିତି ଠିଆ ହୋଇ ରହିଥାଏ । ବାବୁଙ୍କର ଚିଡିବା ଦେଖି ସେ ମଧ୍ୟ ଡରିଗଲାଣି । ଆରେ କହୁଛି ପରା ଷ୍ଟପ୍ ଇଟ୍ । ଫ୍ୟାନ୍ ଟାକୁ ବନ୍ଦ କର । ସଂଗେ ସଂଗେ ଫ୍ୟାନ୍ଟିକୁ ବନ୍ଦ କରି ଦେଲା ବନା । ଫ୍ୟାନ୍ ଆଉ ବୁଲୁ ନାହିଁ। ସମରେନ୍ଦ୍ର ବାବୁଙ୍କ ମନରେ ବିରକ୍ତିର ଭାବ । କିମିତି ଏଇଠି ବାକିତକ ଦିନ କଟେଇବେ । ସବୁଥିରେ ଏଡ଼୍ଜାଷ୍ଟ କରିବାକୁ ହିଁ ପଡିବ ତାଙ୍କୁ । ଅଶାନ୍ତିରେ ରୁଟି ଦୁଇପଟ ଖାଇ କ୍ଷୀର ପିଇ ଶୋଇ ପଡିଲେ ।

ଶୋଇ ଶୋଇ ସେ ଭାବୁଛନ୍ତି ବଞ୍ଚିବା ପାଇଁ ହେଲେ ଆଡଜଷ୍ଟମେଣ୍ଟ ର ନିହାତି ଆବଶ୍ୟକ । ଏଇ ଶବ୍ଦଟି ଜୀବନର ପ୍ରତ୍ୟେକ କ୍ଷେତ୍ରରେ ପ୍ରଯୁଜ୍ୟ । ରାଜନୀତିରେ, କର୍ମ କ୍ଷେତ୍ରରେ, ପରିବାରରେ ଓ ବୈବାହିକ ଜୀବନରେ ଏହା ମହୌଷଧୀ ଭଳିଆ କାମ କରେ । ଆଡଜଷ୍ଟ କରିବାକୁ ହେଲେ ସହନଶୀଳତାର ଏକାନ୍ତ ଆବଶ୍ୟକ। ଶୋଇ ଶୋଇ ଭାବୁଛନ୍ତି ସେ, ଆଖି କି ତାଙ୍କର ନିଦ ଆଦୌ ଆସୁ ନାହିଁ । ଏଇ ଗାଁ ତାଙ୍କର ଜନ୍ମ ମାଟି । ଏତେ ପର ହୋଇଗଲେ କିମିତି ସମସ୍ତେଏଠି ? କେହି ଜଣେ ହେଲେ ବି ତାଙ୍କ ସହିତ ମିଳା ମିଶା କରୁ ନାହାନ୍ତି, ଖୋଲା ମନରେ କଥା ହେଉ ନାହାନ୍ତି । ସେ ମନେ

ମନେ ଭାବୁଛନ୍ତି ନିଶ୍ଚିତ ଭାବରେ ଗାଁର ସମସ୍ତଙ୍କୁ ଆପଣେଇ ନେବେ, ନିଜର କରିନେବେ, ସମସ୍ତଙ୍କ ସହିତ ମିଶିବେ, ସମସ୍ତଙ୍କ ସୁଖ ଦୁଃଖରେ ସାଥି ହେବେ, ପୁଣି ଫେରି ଯିବେ ସେଇ ପିଲା ଦିନର ଅତୀତକୁ ।ଏଇଠି ସିଏ ଗୋଟିଏ ନୂଆ ଜୀବନ ର ଅଧ୍ୟାୟ ଆରମ୍ଭ କରିବେ, ନୂଆ ପରିବେଶ ସୃଷ୍ଟି କରିବେ। ଭାବୁ ଭାବୁ ସେ ଶୋଇ ପଡିଛନ୍ତି କୁକୁରଟା ଭୁକିବାରୁ ସକାଳେ ତାଙ୍କର ନିଦ ଭାଙ୍ଗିଲା ।

ବାରିପଟ ଦାଣ୍ଡ ଦ୍ୱାର ରାସ୍ତା ସେପଟେ ଗାଁ ବାଲାଙ୍କ ଘର । ସକାଳେ ପିଲାଏ ସେଇ ଦାଣ୍ଡ ଧୂଳିରେ ଖେଳନ୍ତି । ଲଙ୍ଗଳା ପିଲା, କାହାର ଧୂଳି ଧୂସରିତ ପ୍ୟାଣ୍ଟ ତ ପୁଣି କାହାର ଦେହ ସାରା ଧୂଳି। ଏଇ ଧୂଳିରେ କେବଳ ଏଇ ପିଲାଦିନେ ହିଁ ଖେଳିବାର ସୁଯୋଗ ମିଳିଥାଏ, ଟିକିଏ ବଡ ହେଲେ ଆଉ ଏଇ ଧୂଳି ମାଖିବାର ମଜା ମିଳେ ନାହିଁ। ଜୀବନକୁ ଉପଭୋଗ କରିବାକୁ ହେଲେ ବିଭିନ୍ନ ଅବସ୍ଥାରେ ବିଭିନ୍ନ ପ୍ରକାର ବାତାବରଣ , ପରିସ୍ଥିତି ଓ ଅବସ୍ଥାକୁ ଅତିକ୍ରମ କରିବାକୁ ହୋଇଥାଏ । ଜୀବନ ଚକ୍ର ଅତ୍ୟନ୍ତ ରହସ୍ୟମୟ ।

ଏଇ ପିଲାମାଙ୍କର ଧୂଳି ଖେଳକୁ ଦେଖି ତାଙ୍କର ପିଲା ଦିନର କଥା ମନେ ପଡି ଯାଉଛି । ସେ ଦିନ କଣ ଆଉ ସେ ଫେରି ପାଇବେ ? ମନେ ମନେ ଭାବିଲେ ପିଲାମାନଙ୍କ ସହିତ ମିଶିବେ, ତାଙ୍କ ସହିତ କଥା ହେବେ, ମଜା କଥା , କୌତୁକିଆ କଥା କହିବେ। ହାତରେ ବିସ୍କୁଟ ପେକେଟ ଧରି ଡାକିଲେ ପିଲେ, ଆସ ବିସ୍କୁଟ ନିଅ। ଧୂଳି ଧୂସରିତ ଲଙ୍ଗଳା ପିଲାଗୁଡାକ ଏକ ଧ୍ୟାନରେ ଚାହିଁଲେ ତାଙ୍କ ଆଡେ। ଅଣ୍ଟା ତଳକୁ ଗଳି ପଡୁଥିବା ପ୍ୟାଣ୍ଟ ଟିକୁ ବାମ ହାତରେ ଟେକି ଧରି ଡାହାଣ ହାତରେ ବହି ପଡୁଥିବା ସିଂଘାଣି ପୋଛି ଜଣେ ପିଲା ଚୁପ୍ ଚାପ୍ ମୁହଁ ପୋତି ନିଜ ଘର ଆଡକୁ ମୁହଁ ବୁଲାଇବାରୁ ଅନ୍ୟମାନେ ଦୌଡିଲେ। ସେ ସ୍ତମ୍ଭୀଭୁତ ହେଲେ।

ଏବେ ସେ ବଡ ଲୋକ ମାନଙ୍କ ସହିତ ମିଶିବେ ବୋଲି

ଭାବୁଛନ୍ତି ମନେ ମନେ । ସେ ଦାଣ୍ଡ ଦୁଆରରେ ଛିଡା ହୋଇଛନ୍ତି । ଗାଁ ଲୋକଙ୍କୁ ଡାକିବେ , ଆସନ୍ତୁ ସମସ୍ତେ, ଏଠି ବସନ୍ତୁ , ସୁଖ ଦୁଃଖ ହେବା ଗାଁର ହାନି ଲାଭ ବୁଝିବା, ହେଲେ ମନର ଭାବକୁ ପ୍ରକାଶ କରି କାହାକୁ କିଛି କହି ପାରୁନାହାନ୍ତି । ଗାଁ ଲୋକେ ତାଙ୍କ ଘର ସାମ୍ନା ରାସ୍ତାରେ ଯିବା ଆସିବା କରୁଛନ୍ତି, କେତେକ ତାଙ୍କୁ ଅନଉଛନ୍ତି ପୁଣି କେତେକ ତାଙ୍କୁ ନ ଚାହିଁ ସିଧା ସଳଖ ଚାଲି ଯାଉଛନ୍ତି । ତାଙ୍କ ସମୟର ବୁଢା ଲୋକ ମୋନେ କେତେକ ସଂସାର ଛାଡି ଚାଲି ଗଲେଣି ଆର ପାରିକୁ, ଆଉ ଏବେ କାର ପିଲା ମାନଙ୍କର ଜନ୍ମ ଯେତେବେଳେ ସିଏ ଗାଁରେ ନ ଥିଲେ । ଏମାନେ ବା ତାଙ୍କୁ ଚିହ୍ନିବେ କିମିତି । ବଡିଲା ଝିଅ ମାନେ ଗାଁରେ ନାହାନ୍ତି, ଯିଏ ଯୁଆଡେ ବାହା ହୋଇ ଗଲେଣି । ନୂଆ ହୋଇ ଆସିଥିବା ବୋହୂ ମାନେ ହାତେ ଓଢଣୀ ଟାଣି ଲାଜ ରେ ବାଟ ଭାଙ୍ଗି ଚାଲି ଯାଉଛନ୍ତି ।

ସିଏ ଜଣେ ବଡ ଅଫିସର । ଲୋକମାନେ କଣ ବା କହିବେ ତାଙ୍କୁ । ଆଦବ କାଇଦା ଜଣା ନାହିଁ, ତାଙ୍କ ସହିତ ମିଶିବେ କିପରି , ଭାବର ଆଦାନ ପ୍ରଦାନ କରିବେ କିପରି , ପାଖେରେ ବସିବେ କିପରି , ସମସ୍ତେ ଖଟି ଖିଆ , ମଜୁରିଆ, ମୂଲିଆ, ମାଟିରେ ମାଟି ହୋଇ ଜୀବନ ବଞ୍ଚାଇବା ପାଇଁ ନିଜକୁ ଉତ୍ସର୍ଗ କରିଥିବା ଲୋକଟା ବା କିପରି ବଡ ଲୋକ ସହିତ କଥା ହେବ ? କଥା କହିବାର ବା ଆବଶ୍ୟକତା କଣ, କିଛି ନ କହିଲେ ବା କାହାର କଣ କ୍ଷତି ହବ, ସବୁଠୁ ଭଲ ଚୁପ୍ ରହିବା । ସେଥିପାଇଁ ଲୋକମାନେ ଚୁପ୍, ସମରେନ୍ଦ୍ର ବାବୁ ମଧ୍ୟ ଚୁପ୍ । ନିରବରେ ସମୟ ବିତେ ଜଣା ପଡେ ନାହିଁ ।

ଇମିତି ଅନେକ ଦିନ ନିଜ ଦାଣ୍ଡ ଦୁଆର ମୁହଁରେ ଅନେକ ସମୟ ଚୁପ୍ ଚାପ୍ ଛିଡା ହୋଇ ଘର ଭିତରକୁ ଫେରନ୍ତି ସିଏ ନିରବରେ । ଏବେ ତାଙ୍କୁ ଆଉ ଗାଁ ଭଲ ଲାଗୁ ନାହିଁ । ବଞ୍ଚିବାର ଉପାଦାନ ଏଠି କିଛି ନାହିଁ ତାଙ୍କ

ପାଇଁ । ସେ ଏକୁଟିଆ, ନିର୍ଜନତା ଓ ନିଃସଙ୍ଗତା ମଧ୍ୟରେ ବଞ୍ଚିବେ କିପରି ? ମନେ ମନେ ନିଷ୍ପତ୍ତି ନେଲେ ସହରକୁ ଫେରି ଯାଇ ଅବସର ଜୀବନ ବିତେଇବେ । ବନାକୁ କହିଲେ ଆରେ ବନା, ମୋର ଜିନିଷ ପତ୍ର ସବୁ ସଜାଡ଼ି ରଖ । ମୁଁ ଆସନ୍ତା କାଲି ସକାଳୁ ସହରକୁ ଚାଲିଯିବି । ବନା ମଧ୍ୟ ମନେ ମନେ ଖୁସି । ଏ ବୁଢାଙ୍କ ମିଜାଜ୍ ନେଇ ଚଳିବା ମୁସ୍କିଲ ଥିଲା ତା ପକ୍ଷରେ । ବୁଢା ମଝିରେ ମଝିରେ ଇଂରାଜୀରେ କଣ ଗୁଡାଏ କହି ପକାନ୍ତି ସିଏ କିଛି ବୁଝିପାରେ ନାହିଁ ବୋଲି ସେ ବେଳେ ବେଳେ ତା ଉପରେ ଖପ୍ପା ହୁଅନ୍ତି । ଯାଉ ... ଯାଉ... ଏ ବୁଢା ଯାଉ ଏଠୁ, ସେ ଏଠୁ ଗଲେ ମଙ୍ଗଳ, ସିଏ ଖୁସିରେ ରହିବ ।

ତା'ପର ଦିନ ସକାଳୁ ବନା ତାଙ୍କୁ ବସରେ ବସେଇ ଦବା ପାଇଁ ବସ ରହୁଥିବା ସ୍ଥାନକୁ ଆସିବା ବେଳେ ପଛ ପଟୁ ଲୋକମାନେ କହୁଥିଲେ ଅବସର ପରେ ବୁଢ଼ା କଣ ଏଠି ରହିପାରିବ ? ଏ ଗାଁ ମାଟି କଣ ତାକୁ ଆକର୍ଷଣ କରି ପାରିବ ? ସିଏତ ଏବେ ପିଲା ନୁହେଁ ଅବସର ପ୍ରାପ୍ତ ଜଣେ ବୁଢ଼ା ମଣିଷ । ସମରେନ୍ଦ୍ର ବାବୁ ମନେ ମନେ କହୁଥିଲେ ହଁ.....ହଁ...... ଜଣେ ଅବସର ପ୍ରାପ୍ତ ବୁଢ଼ା , ଏଇ ଗାଁ , ଏଇ ମାଟି, ଏଇ ମଣିଷ, ସମସ୍ତେ ଆଜି ତା ପାଇଁ ଅଲୋଡା, ଯେହେତୁ ସିଏ ଜଣେ ବୁଢା ।

ସିଏ ଖୁବ୍ ଗୋଟିଏ ଦୀର୍ଘ ନିଶ୍ୱାସ ପକେଇ ବସ୍ ଉପରକୁ ଉଠିଗଲେ । ଆଗେଇ ଚାଲିଲା ବସ୍ , ପଛରେ ରହିଗଲା ତାଙ୍କ ଜନ୍ମ ମାଟି ଗାଁ, ପୁଣି କେବେ ଆସିବେ ଏଠାକୁ ସେ ଜାଣନ୍ତି ନାହିଁ । ଜୀବନର ଅପରାହ୍ନ , ଅବସର ସମୟ କଟେଇବେ ସହରରେ ।



# ବୃନ୍ତଚ୍ୟୁତ ପତ୍ର

ସୁନୀତା କାନ୍ଦୁଥିଲା । ସେ ଇମିତି ଦିନେ ଦିନେ ନିରୋଳାରେ ବସି କାନ୍ଦେ । ଯେତେବେଳେ କେହି ଜଣେ ତାଙ୍କୁ ଦେଖି ପକାଏ, ସେ ହଠାତ୍ ଲୁହ ପୋଛି ନ କାନ୍ଦିବାର ଛଳନା କରେ । କାନ୍ଦିଲେ କୁଆଡେ ହୃଦୟରେ ଜମାଟ ବାନ୍ଧିଥିବା କୋହ ସବୁ ତରଳି ଯାଇ ଲୁହ ରୂପରେ ପଦାକୁ ବାହାରି ଆସେ ବୋଲି ଶୁଣିଥିଲା, ଆଉ କାନ୍ଦିଲେ ମନଟା କୁଆଡେ ହାଲୁକା ହୋଇଯାଏ ମଧ୍ୟ । ମନଟା ଥରେ ହାଲୁକା ହୋଇଗଲେ ପୁରୁଣା କଥା ସବୁ ନଈବଢିରେ ଗଛ, ପତ୍ର, କୁଟା,କାଠି ଭାସିଗଲା ପରି ଆଖିର ଲୁହରେ ହୃଦୟର ସମସ୍ତ ବେଦନାର ଆବର୍ଜନା ଧୋଇ ହୋଇଯାଏ ।

ସୁନୀତା ଚୁପ୍‌ଚାପ୍ ମିଜାଜ୍‌ର ଝିଅ । କାହାରି ସହିତ କଥାବାର୍ତ୍ତା ହେବା କେହି କେବେ ଦେଖିନାହିଁ । ଘରୁ ସ୍କୁଲ୍‌କୁ ଯିବା ଓ ସ୍କୁଲ ଛୁଟି ହେଲେ ଘରକୁ ଆସିବା ବ୍ୟତୀତ ଅନ୍ୟତ୍ର ଯିବା, ବୁଲିବା ଅନ୍ୟମାନଙ୍କ ସହିତ ଗପିବା ତାର ଅଭ୍ୟାସର ବାହାରେ । ଭାନୁପୁର ୟୁ.ଜି.ଏମ୍.ଇ. ସ୍କୁଲରେ ସେ ଆଜକୁ ପାଞ୍ଚବର୍ଷ ହେଲା ଚାକିରୀ କରିଆସୁଛି । ସ୍କୁଲର ପ୍ରଧାନ ଶିକ୍ଷୟିତ୍ରୀ ନୀଳିମା ଦାସଙ୍କୁ ଛାଡିଦେଲେ ଅନ୍ୟ ଦୁଇଜଣ ଶିକ୍ଷକ, ଶିଶିର ଓ ନିକୁଞ୍ଜ । ଦୁହେଁ ବିବାହିତ । ଶିଶିର ପିଲାଛୁଆ ଧରି ରହୁଥିବା ବେଳେ ନିକୁଞ୍ଜ ଗାଁରେ ପିଲା ଛୁଆଙ୍କୁ ଛାଡି ଏକୁଟିଆ ଘରଭଡା ନେଇ ଚଳନ୍ତି ।

ନୀଳିମା ଦାସଙ୍କୁ ସୁନୀତା ବଡ ଦିଦି ବୋଲି ସମ୍ବୋଧନ କରେ ଓ ଯଥେଷ୍ଟ ସମ୍ମାନ ଦିଏ । ସତରେ ବଡଦିଦି ଯେପରି ତାର ସବୁ କିଛି, ତାର ବାପା, ମାଆ, ଭାଇ ବନ୍ଧୁ ଇତ୍ୟାଦି । ଏହାର କାରଣ ସୁନୀତା ପିଲା ଦିନରୁ ତାର ବାପା, ମାଆଙ୍କୁ ହରେଇ ଥିଲା ଏବଂ ଚାକିରୀ ଜୀବନରେ ସେ ଏକୁଟିଆ, ଆଉ ବା କାହା ସହିତ ସମ୍ପର୍କ ରଖନ୍ତା । ସୁନୀତା ଯେ ବଡଦିଦିଙ୍କୁ ଏତେ ଭଲପାଏ, ଭକ୍ତି କରେ ବଡ ଦିଦି ଏସବୁ କିଛି ଉପଲବ୍ଧି କରିପାରନ୍ତି ନାହିଁ । ଚାକିରୀ ଜୀବନରେ ତଳିଆ

କର୍ମଚାରୀର କର୍ତ୍ତବ୍ୟ ଉପରିସ୍ଥ କର୍ମଚାରୀଙ୍କୁ ସମ୍ମାନ ପ୍ରଦର୍ଶନ କରି ଆଜ୍ଞାବହ ହେବା ବ୍ୟତୀତ ଆଉ କଣ ହୋଇପାରେ । ଚାକିରୀ ଜୀବନତ ଏକ କର୍ମମୟ ଜୀବନ । ଏଠି କିଏ କାହାର । କିଏ କାହାର ବ୍ୟକ୍ତିଗତ ଜୀବନ ବା ସମସ୍ୟା କଥା ବୁଝିବ ବା କାହିଁକି ? ଠିକ୍ ବାଟରେ ସବୁ ଜିନିଷ ଗଲେ ସବୁ ଠିକ୍ । ଝମେଲା ସୃଷ୍ଟିକୁ କେହି ପସନ୍ଦ କରନ୍ତି ନାହିଁ କିମ୍ବା କେହି କାହାରି ଅବଜ୍ଞାକୁ ପସନ୍ଦ କରନ୍ତି ନାହିଁ । ସେଦିନ ସୁନୀତା ଶ୍ରେଣୀରେ ପାଠ ପଢାଉଥିଲା ବେଳେ ହଠାତ୍ ଗୋଟିଏ ଝିଅ ମୂର୍ଚ୍ଛା ଗଲା । ଏହା ଏକ ବାତ ରୋଗ । ବଡଦିଦି ଛାନିଆ ହୋଇ ଝିଅଟିର ମୁହଁରେ ପାଣି ଛିଞ୍ଚି ତାର ଚେତା ଫେରାଇ ଆଣିବାରେ ସକ୍ଷମ ହୋଇଥିଲେ ଏବଂ ସୁନୀତାକୁ ଅନୁରୋଧ କରିଥିଲେ ଝିଅଟିକୁ ତା ଘରେ ଛାଡି ଦେବା ପାଇଁ କିନ୍ତୁ ସୁନୀତା ଏହା କରି ପାରିବ ନାହିଁ ବୋଲି ନାସ୍ତିବାଣୀ ଶୁଣାଇଥିଲା ,ଏବଂ କହିଥିଲା ଦିଦି ଆପଣ ମୋତେ ନ ପଠେଇ ଆଉ କାହା ହାତରେ ଝିଅଟିକୁ ପଠେଇ ଦିଅନ୍ତୁ । ନୀଳିମା ଦାସ କାର୍ଯ୍ୟଟିକୁ ଅନ୍ୟ ଜଣଙ୍କ ହାତରେ ତୁଲେଇ ଦେଲେ, ହେଲେ ସୁନୀତା ଉପରେ ଯେ ମନରେ ଅସୂୟାଭାବ ରଖିଲେ ସୁନୀତା ବା ଏକଥା ଜାଣନ୍ତା କିମିତି ।

ସବୁଦିନ ସମାନ ଯାଏ ନାହିଁ । ନିଜର ଭାଗ୍ୟର ଡୋରିରେ ମନୁଷ୍ୟ ବନ୍ଧା । ସୁନୀତା ଏବେ ଅନୁଭବ କଲାଣି ନିକୁଞ୍ଜ ବାବୁଙ୍କର ଅସ୍ୱାଭାବିକ ହାବ ଭାବ । କଥା ମାଧ୍ୟମରେ ସେ ବଡଦିଦିଙ୍କୁ ଏ କଥା ମଧ୍ୟ ଶୁଣେଇ ଦେଲାଣି । ବଡଦିଦି ସବୁ ଶୁଣିସାରି ନ ଶୁଣିଲାପରି ରହିଗଲେ । ନିକୁଞ୍ଜ ବାବୁ ଙ୍କ ଅଭ୍ୟାସଟା ଦିନକୁ ଦିନ ବଢି ବଢି ଚାଲିଲା । ବିରାଡି କପାଳକୁ ଶିକା ଛିଡିଲା ପରି ଦିନେ ନିକୁଞ୍ଜ ବାବୁଙ୍କ କପାଳରେ ଶିକା ଛିଡିଲା । ନୀଳିମା ଦାସ ଅସୁସ୍ଥତା କାରଣରୁ କିଛିଦିନ ଛୁଟିରେ ଗଲେ । ଶିଶିରବାବୁ ସପ୍ତମ ଶ୍ରେଣୀ ପିଲାଙ୍କୁ ପାଠ ପଢାଉଥାନ୍ତି । ଅଫିସ ରୁମରେ ବସି ନିକୁଞ୍ଜ ଖବର କାଗଜ ପଢୁଥିଲେ । ସୁନୀତା ଆଲମାରୀରୁ ଷଷ୍ଠ ଶ୍ରେଣୀ ପିଲାଙ୍କ ଉପସ୍ଥାନ ଖାତା ନଇଁପଡି ଖୋଜା ଖୋଜି କରୁଥିବା ସମୟରେ, ତାର କାନ୍ଧରୁ ଶାଢୀର ଅଞ୍ଚଳଟି ଝୁଲି ପଡିଥିଲା , ଆଉ ଏଇ ମୌକାରେ ସୁନୀତା

ଉନ୍ନତ ବକ୍ଷଜ ଯୁଗଳକୁ ନିକୁଞ୍ଜ ରାଉତଙ୍କ ଲଲୁପ ଦୃଷ୍ଟି ଆସ୍ବାଦନ କରୁଥିଲା । ଅଫିସ ରୁମରେ ସେମାନେ ଦୁଇଜଣ । ସୁନୀତା ଉପସ୍ଥାନ ଖାତା ଖୋଜୁଛି ଓ ନିକୁଞ୍ଜ ମଉକା ଖୋଜୁଛନ୍ତି । ହଠାତ୍ ସେ ଉଠିପଡି ସୁନୀତାକୁ କହିଲେ ହ୍ୟାଲୋ ମାଇଁ ଡାର୍ଲିଂ, ଏହା କହୁ କହୁ ସେ ଭିଡି ଧରିଲେ ସୁନିତାକୁ । ଏପରି ଏକ ଅପ୍ରତ୍ୟାଶିତ ବ୍ୟବହାରରେ ହିଂସ୍ର ବାଘୁଣୀ ଭଳି ଗର୍ଜି ଉଠିଥିଲା ସୁନୀତା । ବ୍ଲଡି, ନନ୍‌ସେନ୍‌ସ, ଷ୍ଟୁପିଡ ଇତ୍ୟାଦି ଗାଳିରେ ନିକୁଞ୍ଜଙ୍କୁ ଗାଧୋଇ ଦେଉଥିଲା ।ହ୍ୱାଟ୍ ମେଡ ୟୁ ଟୁ ଟଚ୍ ମି । ରାସ୍‌କେଲ, ଅଭଦ୍ର, ପାଜି ଇତ୍ୟାଦି । ସୁନୀତାର ଏତେ ବଡ ପାଟିରେ ପିଲାମାନେ ସବୁ ଶ୍ରେଣୀରୁ ବାହାରି ଆସିଲେ । ଶିଶିର ବାବୁ ଆସି ଦେଖନ୍ତିତ ନିକୁଞ୍ଜ କିଂକର୍ତ୍ତବ୍ୟ ବିମୂଢ ଭାବରେ ଚୌକିରେ ବସିଛନ୍ତି ଓ ସୁନୀତା ଡ୍ରାମା କରିବା ଷ୍ଟାଇଲ୍ ରେ ଇଂରାଜୀ ଡାଏଲଗ୍ କହି ଚାଲିଛି । ଶିଶିରବାବୁ ପରିସ୍ଥିତିକୁ ସମ୍ଭାଳିବାକୁ ଯାଇ ସ୍କୁଲଛୁଟି ଘୋଷଣା କଲେ ।

ନୀଳିମା ଦାସ୍ ଦୁଇଦିନପରେ ଛୁଟିରୁ ଫେରି ଦେଖନ୍ତି ସୁନୀତାର ଛୁଟି ଦରଖାସ୍ତ ସହିତ ନିକୁଞ୍ଜବାବୁଙ୍କ ବିରୋଧରେ ଏକ ବିସ୍ତୃତ ବିବରଣୀ ସହ ଅଭିଯୋଗ ପତ୍ର । ନୀଳିମା ଦାସ୍ ସବୁ ପଢିସାରି ଶିକ୍ଷକ ଦୁଇଜଣଙ୍କୁ ଡାକି କଣ ସବୁ କଥା ହେଲେ । ନିକୁଞ୍ଜବାବୁ ସଫେଇ ଦେଲେ, ମାଡମ୍ ମୋତେ ବିଶ୍ବାସ୍ କରନ୍ତୁ , ମୁଁ ବିବାହିତ, ମୋର ପିଲା ଛୁଆ ଅଛନ୍ତି, କେହିକଣ କେବେ ଏକଥା ବିଶ୍ବାସ କରିବ ? ତା ପରେ ସୁନୀତା ଏତେ ସେଣ୍ଟିମେଣ୍ଟାଲ୍ ଓ ସଟ୍ ଟେମ୍ପରର ଝିଅ ବୋଲି ମୁଁ ଆଦୌ ଜାଣି ନ ଥିଲି । ଅଫିସରୁମ୍‌ରେ ମୁଁ ପୁଣି ତାକୁ... ନା...ନା.... ସବୁ ମିଛ, ତାହା ମିଛ, ମୁଁ ଇଶ୍ବରଙ୍କ ନାଁରେ ଶପଥ ନେଇପାରେ, ମୁଁ ପୁରାପୁରି ନିର୍ଦ୍ଦୋଷ । ମୋ ବିରୁଦ୍ଧରେ ଅଭିଯୋଗର କାରଣ ଏବେ ସ୍ପଷ୍ଟ ହୋଇଗଲା । ଏହି ଗାଁରେ ଦୁଇ ଚାରିଟା ଟୋକା ଯେଉଁମାନଙ୍କ ସହିତ ତାର ଭଲ ସମ୍ପର୍କ ଅଛି ଓ ସେମାନଙ୍କ ସହିତ ମୋର ଅପଡ, ସେହିମାନଙ୍କୁ ଧରି ସେ ଏ କାଣ୍ଡ ଭିଆଇଛି । ତାଙ୍କର ଉଦ୍ଦେଶ୍ୟ ସେମାନେ ମୋତେ ଏଠି ରଖେଇ ଦେବେନାହିଁ । ଗାଁର ଟୋକାମାନେ ଆଉଜଣେ ମାଷ୍ଟରଙ୍କୁ ଏଠାକୁ ଆଣିବାକୁ ଚେଷ୍ଟା କରୁଛନ୍ତି । ମୋତେ ତାହେଲେ ଛୁଟି ଦିଅନ୍ତୁ ,

ଚେଷ୍ଟାକରି ବଦଳି ହୋଇ ପଳେଇବି । ଗୋଟିଏ ଡ୍ରାମାର ହିରୋ  ଭଳିଆ ଷ୍ଟାଇଲ୍‌ରେ ନିକୁଞ୍ଜ ଏକ ନିଶ୍ୱାସରେ ସବୁ କହିଗଲା । ନୀଳିମା  ଦାସ୍ କଣ ବୁଝିଲେ କେଜାଣି, କହିଲେ ଏଇ ଛୋଟିଆ ଘଟଣାଟିକୁ ନେଇ ଏତେ ହୋ...ହାଲ୍ଲା । ଦୁନିଆରେ କେତେ କଣ ହୋଇ ଯାଉଛି ।

ମୁଁ ଜାଣେ ସୁନୀତା ଭାରି ସେଣ୍ଟିମେଣ୍ଟାଲ ଝିଅ । ଦେଖିଲତ ସେଦିନ ସେଇ ଝିଅ ପିଲାଟିକୁ ନେଇ ତା ଘରେ ଛାଡି ଆସିବାକୁ କହିଥିଲି, ହେଲେ ସେ କଣ ମୋ କଥା ରଖିଥିଲା । ଓଲଟି ସୁନୀତାର ଅନୁପସ୍ଥିତିରେ ତାକୁ ଦୋଷାରୋପ କରି କଥାଟିକୁ ସେଇଠି ପୂର୍ଣ୍ଣଚ୍ଛେଦ ଟାଣିଥିଲେ । କହିଲେ ଏହାକୁ ଯେତେ ମାଜିବ ସେତେ ମୋଟା ହେବ । କଥାରେ ଅଛି ପରା ସୂତା ମାଜିଲେ ସରୁ ଓ କଥା ମାଜିଲେ ମୋଟା । ଛାଡ ସେ ସବୁ କଥା,  ସୁନୀତା ଆସିଲେ ମୁଁ ତାକୁ ବୁଝେଇ ଦେବି । ଘଟଣାଟି କିନ୍ତୁ ଏହାପରେ ଅନେକ ଲୋକଙ୍କ କାନକୁ ଚାଲି ଯାଇଥିଲା ।

ସୁନୀତା ଛୁଟି ବଢେଇ ବଢେଇ ପନ୍ଦର ଦିନପରେ ସ୍କୁଲକୁ ଆସିଲା । ତାକୁ ଲାଗିଲା ସତରେ ଯେପରି ସମସ୍ତେ ତାକୁ ରାଗ ଓ ଅଭିମାନ କରିଛନ୍ତି । ବଡ ଦିଦି ଯାହାକୁ ସିଏ ଏତେ ଭଲ ପାଉଥିଲା, ଭକ୍ତି କରୁଥିଲା, ସିଏ ମଧ୍ୟ ତାକୁ ବୁଝିବାକୁ ଚେଷ୍ଟା କରିନାହାନ୍ତି । ତାଙ୍କ ମୁହଁରୁ ମନର ଭାବ ସ୍ପଷ୍ଟ ବାରିହୋଇ ପଡୁଛି । ନିକୁଞ୍ଜବାବୁଙ୍କର ତା ପ୍ରତି ପୂର୍ବାପେକ୍ଷା ଅଧିକ କଟାକ୍ଷ । ତାର କଟାସିଆ ଆଖି ତା ଦେହକୁ ଯିମିତି ଜାଳି ପୋଡି ଦେଉଛି । ସେ ଆଉ କ୍ଲାସ୍ ରେ କିଛି ପଢେଇ ପାରିଲା ନାହିଁ । ପୁଣି ଏକ ଛୁଟି ଦରଖାସ୍ତ ଦେଇ ବସାକୁ ଫେରି ଆସିଲା ।

କବାଟ ଝରକା ବନ୍ଦ କରି ଏ ଥରକ କିନ୍ତୁ ସିଏ ଭଲକରି କାନ୍ଦିଲା । ତାର ଆଖିର କଳା ମେଘରୁ ଝରିଗଲା । ଶ୍ରାବଣର ଅବିଶ୍ରାନ୍ତ ବାରିଧାରା । କିଏ ଅଛି ତାର ଯେ ମନଖୋଲି ମନ କଥା କହିବ । ଏତେ ବଡ ଦୁନିଆରେ ସେ ଏକୁଟିଆ । ସେଇ ଦୁଇଚାରିଦିନ ଭିତରେ ଗାଁରେ ମଧ୍ୟ ଅନେକଲୋକ ଦେଖିଛନ୍ତି ତାକୁ କାନ୍ଦିବାର । ଏବେ ସେ ମୂକ ପାଲଟି ଯାଇଛି । ତାକୁ ନିର୍ଜନତା ଘେରିବସିଛି । ତାକୁ ତା ନିଜଘରର କାନ୍ଥ, ଚାଳ, ବାଡ, କବାଟ,  ଝର୍କା ସବୁ ବିଦ୍ରୁପ କରୁଛନ୍ତି । ସେ ଅସହାୟ ହୋଇ

ଉଠୁଛି । ଦିନସାରା ଘରେ ବସିଛ, ରୋଷେଇ କରିନାହିଁ । ଖିଆ ପିଆର ଠିକ୍ ନାହିଁ । ମୁଣ୍ଡ ଭୀଷଣ ଭାବରେ ବିନ୍ଧୁଛି, ଦେହ ଜର ଜର ଲାଗୁଛି । ଗଲା କାଲି ରାତିର ଅଇଁଠା ବାସନ ଗୁଡାକ ରୋଷେଇ ଘରେ ସିମିତି ପଡିଛି । କୂଅରୁ ପାଣି ମଧ୍ୟ ଆଣିନାହିଁ , ମାଠିଆ ଖାଲି । ଅସହାୟର ବଳୟ ମଧ୍ୟରେ ସିଏ ଆଜି ବନ୍ଦୀ । କେହି ସାହା ଭରସା ନାହାନ୍ତି ।

ରାତି ଅନେକ ହେଲାଣି । ସେ ଦେଖିଲା ତାର ହାତ ଘଣ୍ଟାକୁ ରାତି ଗୋଟାଏ, ସମସ୍ତେ ଶୋଇ ପଡିଲେଣି , ଗାଁଟା ଯାକ ନିସ୍ତବ୍ଧ ।

ଗାଁ ମୁଣ୍ଡ ସ୍କୁଲ ସେପଟେ ଧାନ ବିଲ, ଆଉ କିଛି ବାଟ ପରେ ଗୋଟିଏ ଝରଣା । ସେଇ ଝରଣା କୂଳରୁ ବିଲୁଆଟେ ରଡି କରି ଉଠିଲା , ହୁକେ... ହୋ । ତା ପରେ ଏକ ସଂଗେ ରଡି କରିବାକୁ ଆରମ୍ଭ କରିଦେଲେ ବିଲୁଆ ପଲ ଯିଏ ଯେଉଁଠି ଥିଲେ । ଗାଁର କୁକୁର ଗୁଡାକ ଏତେବେଳେ ଯାଏଁ କେଉଁଠି ଥିଲେ କେଜାଣି, ସବୁ ଭୁକି ଉଠିଲେ ଏକାଥରେ, ସତେ ଯିମିତି ଆହ୍ୱାନର ସଂଙ୍କେତ । ପ୍ରକୃତିସ୍ଥ ହୋଇଉଠିଲା ସୁନୀତା । ପଶୁ ମାନଙ୍କର ନିଜସ୍ୱ ସ୍ୱରଉତ୍ତୋଳନ କରିବାର ସାହସ ଅଛି, ତା'ହେଲେ ମଣିଷ କାହିଁକି ଏତେଭୀରୁ । ବିଶେଷ କରି ନାରୀ ଜାତି ଏତେ ଦୁର୍ବଳ କାହିଁକି । ସମସ୍ତେ ଜାଣିଛନ୍ତି ନାରୀ ହିଁ ହୁଏ, ଜନନୀ, ଭଗିନୀ, କନ୍ୟା ଓ ଅର୍ଦ୍ଧାଙ୍ଗିନୀ, ପୁଣି ସିଏ କାହିଁକି ହୁଏ ଧର୍ଷିତା, ନିର୍ଯ୍ୟାତିତା, ସମାଜର ଆଖି କାହିଁକି କ୍ଷଣିକ ଭିତରେ ହୁଏ ଏତେ ପରିବର୍ତ୍ତନ । ତା ଆଖିରେ ଆଉ ଲୁହ ନଥିଲା ବୋହିଯିବାକୁ । ସେ ପୁଣି କାନ୍ଦିବାକୁ ଚେଷ୍ଟାକଲା କିନ୍ତୁ କାନ୍ଦି ପାରିଲା ନାହିଁ । ସିଏ ଶେଷ ସିଦ୍ଧାନ୍ତ ନେବାକୁ ଯାଉଥିଲା । ହାତ ତାର ଥରି ଉଠୁଥିଲା ଘନ ଘନ ନିଃଶ୍ୱାସ ବହୁଥିଲା । ଭାବିଲା... ନା... ଗୋଟେ କିଛି କରି ବସିବା ପୂର୍ବରୁ ଜଣେଇଦବ ସେ ବଡ ଦିଦିଙ୍କୁ ଚିଠି ମାଧ୍ୟମରେ । ତେଣୁ ଲେଖିବାକୁ ଆରମ୍ଭକଲା ଚିଠି ।

ପୂଜ୍ୟା ବଡଦିଦି, ଏହା ମୋର ଆପଣଙ୍କୁ ଶେଷ ପ୍ରଣାମ ଓ ଶେଷ ଚିଠି । ତେଣୁ ଦୟା ପୂର୍ବକ ଧୈର୍ଯ୍ୟର ସହ ଚିଠିଟି ପଢିବେ ବୋଲି ମୋର ବିଶ୍ୱାସ । ଆପଣଙ୍କୁ ମୁଁ ବଡ ଦିଦି ବୋଲି ସମ୍ବୋଧନ କଲି କେବଳ କାଗଜରେ ନୁହେଁ, ମୋର

ମନର ନିଭୃତ କୋଣରୁ । ମୁଁ ଆପଣଙ୍କୁ ମୋର ନିଜର ବାପା, ମା, ଭଳିଆ ଭକ୍ତି କରେ ଏହା ମୋ ମନର ନିଛକ ସତ କଥା ।

ସୁନୀତା ମୋର ପିତୃ ପ୍ରଦତ୍ତ ନା । ମୁଁ ଜନ୍ମ ହେଲାବେଳକୁ ମୋ ମାର ମୃତ୍ୟୁ ହେଲା । ମୋର ଚଉଦ ବର୍ଷ ବେଳକୁ ପିତାଙ୍କର କାଳ ହେଲା । ତେଣୁ ମୁଁ ଗୋଟିଏ ଅଲକ୍ଷଣୀ ଝିଅ କାରଣ ବାପା, ମାଙ୍କୁ ଖାଇଛି । ବେଳେବେଳେ ଭଗବାନଙ୍କ ପ୍ରତି ମୋର ଅଶେଷ କ୍ରୋଧ ଓ ଘୃଣା ଜନ୍ମେ, ସେ ବା କାହିଁକି ମୋତେ ଝିଅ ରୂପରେ ଜନ୍ମ ଦେଲେ ।

ମୋର ତାଙ୍କୁ ଏ ଜୀବନରେ ଶେଷ ପ୍ରାର୍ଥନା, ଯଦି ମୋତେ ଆଉଥରେ ଜନ୍ମ ନେବାକୁ ପଡେ ତାହେଲେ ଝିଅ ଜନ୍ମ ଛାଡି ଆଉ ଯେଉ ଜନ୍ମ ଦେଲେ ମୋର ଆପତ୍ତି ନାହିଁ ।

ବାପାଙ୍କର କାଳ ହୋଇ ଯିବାପରେ ମାମୁଁ ମୋତେ ତାଙ୍କ ଘରକୁ ନେଇ ଆସିଲେ । ମୋର ପୁଣି ପାଠ ପଢା ଆରମ୍ଭ ହେଲା ନବମ ଶ୍ରେଣୀରୁ । ଗାଁ ସ୍କୁଲରୁ ମ୍ୟାଟ୍ରିକ୍ ପାସ୍ କଲାପରେ ଭର୍ତ୍ତିହେଲି କଲେଜରେ । ବି.ଏ. ପାସକଲି । ମାମୁଁ କହିଲେ ଆଉ ପଢାଇ ପାରିବେ ନାହିଁ, କାରଣ ସେ ଜଣେ ପୋଷ୍ଟ ପିଅନ ମାତ୍ର । ଏତେ ଖର୍ଚ୍ଚ ଦେଇ ପାରିବେ ନାହିଁ । ଏହା ଛଡା ମାମୁଁଙ୍କର ଗୋଟିଏ ବୋଲି ପୁଅ ନାମ ଶରତ, ତା ପଢା ପାଇଁ ମାମୁଁ ଅନେକ ପଇସା ପତ୍ର ଖର୍ଚ୍ଚ କରୁଛନ୍ତି । ମୋର ବାହାଘର ପାଇଁ ସେ ମନେ ମନେ ଉପଯୁକ୍ତ ପାତ୍ର ଟିଏ ଖୋଜୁଥିଲେ, ମୁଁ କିନ୍ତୁ ଚାହୁଁଥିଲି ଚାକିରୀଟିଏ । ତେଣୁ ଘରେ ବସିବା ଅପେକ୍ଷା ବି.ଇଡି. ଟ୍ରେନିଂ କୋର୍ସ କରିବାକୁ ମନରେ ସ୍ଥିର କଲି ।

ମୁଁ ସେଦିନ ଖୁବ ଆନନ୍ଦିତ ହୋଇଥିଲି ଯେଉଁଦିନ ବି.ଇଡି. ଟ୍ରେନିଂ ପାଇଁ ଚିଠି ପାଇଥିଲି । ବି.ଇଡି. ଟ୍ରେନିଂରେ ମଧ୍ୟ ପାସ କଲି । ମନେ ମନେ ଠାକୁରଙ୍କୁ ଡାକୁଥାଏ କେଉଁଠି ହେଲେ ଗୋଟିଏ ଶିକ୍ଷୟିତ୍ରୀ ପୋଷ୍ଟ ମିଳିଯାଉ । ଅନେକ କାଳ ପାଇବାପରେ ମଧ୍ୟ ଚାକିରୀଟିଏ ମିଳିଲା ନାହିଁ, କିଏ ଅଛି ଯେ କୁହାବୁଲା କରନ୍ତା ମୋ ପାଇଁ । ମୁଁ ସବୁ ସିଦ୍ଧାନ୍ତ ଭଗବାନଙ୍କ ଉପରେ ଛାଡିଦେଇଥିଲି । କାରଣ ତାଙ୍କ

ଉପରେ ମୋର ଅଟଳ ବିଶ୍ୱାସ ।

ଦିନେ ଭୁବନେଶ୍ୱରରୁ ଇଣ୍ଟରଭ୍ୟୁ ପାଇଁ କଲ୍ ପାଇଲି । ସାଙ୍ଗରେ ସାନଭାଇ ଶରତକୁ ଧରି ଭୁବନେଶ୍ୱରକୁ ଆସିଲି, ଇଣ୍ଟରଭ୍ୟୁ ଦେଇସାରି ରେଳ ଷ୍ଟେସନକୁ ଆସିବାବେଳକୁ ବର୍ଷା ଆରମ୍ଭ ହୋଇଯାଇଥାଏ । ଯିଏ ଯେଉଁଠି ପାଇଲା ଆଶ୍ରୟ ନେଇଥାନ୍ତି । ବର୍ଷା ଛାଡିଲା ବେଳେକୁ ରାତି ଆଠଟା, ଟ୍ରେନ ଷ୍ଟେସନ ଛାଡିଦେଇଥାଏ । ସେତେବେଳକୁ ବସ୍ ମଧ୍ୟ ନାହିଁ । ଉତ୍ତେଜନା ଆଶଙ୍କାରେ ମନଟା ଘାଣ୍ଟିଚକଟି ହେଲା ।

ଦୈବାତ୍ ଶରତର ଜଣେ ସାଙ୍ଗ ସହିତ ଦେଖା ହେଲା ଏବଂ ସେ ଆମ୍ଭ ଦୁଇଜଣଙ୍କୁ ଟ୍ରେକର ଯୋଗେ ଆସିବାକୁ ଅନୁରୋଧ କଲା । ତିନିଜଣ ମିଶି ମୁକୁନ୍ଦପୁର ପର୍ଯ୍ୟନ୍ତ ଆସିଲୁ । ମୁକୁନ୍ଦପୁରଠାରୁ ମାମୁଁଘର ଗାଁ ଦୁଇ କିଲୋମିଟର । ରାସ୍ତା ଭଲନୁହେଁ ଏବଂ ନିଛାଟିଆ । ଦୁର୍ଭାଗ୍ୟକୁ ଶରତର ସାଙ୍ଗ ମୁକୁନ୍ଦପୁରରେ ଓହ୍ଲାଇ ଅନ୍ୟକାମରେ ଚାଲିଗଲା । ଆମେ ଦୁଇ ଭାଇ ଓ ଭଉଣୀ କଣ କରିବୁ କିଛି ଚିନ୍ତା କରି ପାରିଲୁନାହିଁ, ସେତେବେଳକୁ ରାତି ନଅଟା ବାଜି ତିରିଶ ମିନିଟ । କିଟି କିଟି ଅନ୍ଧାର ରାତି, ମଝିରେ ମଝିରେ ଝିପି ଝିପି ବର୍ଷା ହେଉଛି । ଛତା ମଧ୍ୟ ନାହିଁ । ଇଏ ଅଦିନିଆ ମେଘର ଦାଉ । ଆମେ ଦୁଇଜଣ ସାହସର ସହିତ ଚାଲିଲୁ । ରାସ୍ତାରେ ଲୋକ ମଧ୍ୟ କେହି ନଥିଲେ, ଭୟ ଓ ଉତ୍ତେଜନାରେ ମୋର ଦେହରୁ ଝାଳ ବୋହିଯାଉଥାଏ । ହେଲେ କିଛି ଉପାୟ ନ ଥିଲା । ହଠାତ୍ ଆମ ପଛପଟୁ ତିନିଜଣ ଯୁବକ ଏକ ସ୍କୁଟରରେ ଯାଇ ପହଞ୍ଚିଲେ । ସେମାନେ ଯେ ଆମର ପିଛା କରୁଛନ୍ତି, ଆମେ ବା ଜାଣିବୁ କିମିତି ? ହଠାତ୍ ସେମାନେ ଶରତକୁ କାବୁ କରିନେଲେ । ଧସ୍ତା ଧସ୍ତି ହେଲା, ବିଜୁଳି ଝଲକ୍‌ରେ ସ୍ପଷ୍ଟ ଦେଖାଯାଉଥାଏ ସେମାନେ ହାତରେ ଧରିଥିବା ଭୁଜାଲି । ଶରତର କଣ ହେଲା ସେତେବେଳକୁ ମୋର ଜାଣିବାର ଉପାୟ ନଥିଲା । ମୁଁ ଦୌଡିଯାଇଥିଲି ରାସ୍ତାକଡ ଗୋଟିଏ କିଆବୁଦାମୂଳକୁ ଆତ୍ମଗୋପନ ପାଇଁ, ହେଲେ ସେଇ ପିଶାଚମାନେ ମୋତେ ଛାଡି ନଥିଲେ । ତିନିଜଣ ଯାକ ମୋ ପାଟିରେ ମୋ ଓଢ଼ଣିଟିକୁ ପୂରାଇଦେଇ ଟେକିନେଲେ ଓ ଧମକାଇ କହିଲେ ପାଟିକଲେ

ଖତମ କରିଦେବୁ । ତଥାପି ବି ମୁଁ ଜଣକୁ କାମୁଡି, ରାମ୍ପୁଡି ଦେବାରୁ ବାଜିଲା ମୋ ମୁଣ୍ଡରେ ଗୋଟିଏ ଶକ୍ତ ପ୍ରହାର, ମୁଁ ଅଚେତ ହୋଇଗଲି ।

ମୋର ଚେତା ଫେରିଲା ବେଳକୁ ମୁଁ ଥିଲି ଡାକ୍ତରଖାନାରେ । ମୋ ମୁଣ୍ଡରେ ଆଠ ଜାଗାରେ ଷ୍ଟିଚ୍ ପଡିଥିଲା । ସର୍ବାଙ୍ଗ ଶରୀର ଯନ୍ତ୍ରଣାରେ ଘାରି ଯାଇଥିଲା । ସେମାନେ ମୋତେ ଧର୍ଷଣ କରିଥିଲେ । ଶରତ ମଧ୍ୟ ମୋ ପାଖ ବେଡରେ ଶୋଇଥିଲା । ତା' ମୁଣ୍ଡ ଓ ହାତରେ ପଟିମାନ ବନ୍ଧା ହୋଇଥିଲା ।ମୋ ପାଖରେ ମାମୁଁ , ମାଇଁ ଦୁଇଜଣ ଛିଡା ହୋଇ କାନ୍ଦୁଥିଲେ । ଏ ଘଟଣା ତହିଁଆରଦିନ ଖବର କାଗଜ ମାନଙ୍କର ପ୍ରଥମ ପୃଷ୍ଠାମଣ୍ଡନ କରିଥିଲା ।

ବିପଦବେଳେ କୌଣସି ସହୃଦୟ ବ୍ୟକ୍ତି ସାହାଯ୍ୟ କରିବାକୁ ଆସିନଥିଲେ । ଦୋଷୀମାନେ ଥିଲେ ଉଚ୍ଚଶିକ୍ଷିତ, କୁଳୀନ ଘରର ପିଲାମାନେ, ଆଇନର ଆଖିରୁ ସେମାନେ ଖସିଗଲେ । ମାମୁଁ କୋର୍ଟକୁ ବହୁତ ଦୌଡା ଦୌଡି କରି ଥକିଗଲେ । କୋର୍ଟ ରାୟ ଦେଲେ ବଳିଷ୍ଠ ପ୍ରମାଣ ଅଭାବରୁ ମୁଦାଲା ମାନଙ୍କୁ ନିର୍ଦ୍ଦୋଷରେ ଖଲାସ କରାଗଲା । ତା ପରେ ଆରମ୍ଭ ହେଲା ସମାଜର କ୍ରୁର ଦୃଷ୍ଟି ମୋ ଉପରେ, ଯେଉଁଆଡେ ମୁଁ ଗଲି, ଆରମ୍ଭ ହେଲା ଟୁପୁରୁ, ଟାପୁରୁ କଥା, ହସ, କିଏ.... ଓ ଏଇ ଝିଅଟି, ଏଇଥିପାଇଁ ମୁଁ ଘରୁ ବାହାରି ନ ଥିଲି ଅନେକ ଦିନ ପର୍ଯ୍ୟନ୍ତ ।

ଭଗବାନ ଭରସା ହେଲେ । ଶେଷରେ ଏଇ ଭାନୁପୁର ଗାଁର ୟୁ.ଜି.ଏମ୍.ଇ. ସ୍କୁଲ୍‌ରେ ଚାକିରୀ ମିଳିଲା । ଭାବିଥିଲି ଜୀବନର ବାକିତକ ସମୟ ଶିକ୍ଷୟିତ୍ରୀ ହୋଇ କଟେଇ ଦେବି । ହେଲେ ଏହା ମଧ୍ୟ ମୋ କପାଳରେ ଜୁଟିଲା ନାହିଁ ।

ଆଉ ଗୋଟିଏ କଥା କହିବାକୁ ଭୁଲି ଯାଉଛି । ଯେଉଁଦିନ କ୍ଲାସରେ ସେଇ ଝିଅଟି ଅଚେତ୍ ହୋଇ ଯାଇଥିଲା ଆଉ ଆପଣ ମୋତେ ତାକୁ ତା ଘରେ ନେଇ ଛାଡି ଆସିବାକୁ କହିଥିଲେ ମୁଁ ମନା କରିଥିଲି, ତାର କାରଣ ସେଇ ଝିଅଟିର ବାପାକୁ ମୁଁ ଭଲ ଭାବରେ ଜାଣେ । ସେ ଜଣେ ମଦ୍ୟପ, ଦୁଃଶ୍ଚରିତ୍ର ଓ ଲମ୍ପଟ । ମୋତେ ସେଦିନ ଅଶ୍ଳୀଳ ଇଙ୍ଗିତ ପ୍ରଦର୍ଶନ କରିଥିଲା , କେବଳ ଦିନେ ନୁହେଁ , ମୌକା ଦେଖି ଅନେକଥର ।ସେଦିନ ଯଦି ଆପଣ ମୋତେ ଭୁଲ ବୁଝିଥାନ୍ତି, ତାହା ହେଲେ ମୋର

ଗୁରୁଜନ ହିସାବରେ ମୋତେ କ୍ଷମା କରିଦେବେ ।ଆଉ ନିକୁଞ୍ଜ ସେ ଦିନ ଆପଣଙ୍କୁ ସବୁ ମିଛ କହିଥିଲେ । ସେଦିନ ସେ ମୋତେ ଅତ୍ୟନ୍ତ ଅଭଦ୍ର ଭାବରେ ଅସଦାଚରଣ କରିଥିଲେ । ଆପଣ କିନ୍ତୁ ଘଟଣାଟିକୁ ଏକ ତରଫା ଭାବରେ ବିଚାର କଲେ । ମୋ କଥା ଶୁଣିବା ପାଇଁ ଥରୁଟିଏ ମଧ୍ୟ ମୋତେ ସୁଯୋଗ ଦେଲେନାହିଁ ।

ମୁଁ ଜାଣିଥିଲି ଜଣେ ନାରୀ ହିଁ କେବଳ ନାରୀର ହୃଦୟ କଥା ବୁଝିପାରେ ବୋଲି , ତାହା ମଧ୍ୟ ଅସତ୍ୟରେ ପରିଣତ ହେଲା । କେହି ଜଣେ ହେଲେ ସତକୁ ଉନ୍ମୋଚନ କରିବାକୁ ସାହସ କଲେ ନାହିଁ । ସେ କ୍ଷମା ମାଗିଥିଲେ ମୁଁ ତାଙ୍କୁ କ୍ଷମା କରିଦେଇ ଥାନ୍ତି ।

ଏବେ ଆଉ କାହା ଉପରେ ରାଗିବି , କାହାପ୍ରତି ଅଭିମାନ କରିବି । ମୁଁ ଏକ ହତଭାଗିନୀ । ମୁଁ ସମସ୍ତଙ୍କୁ କ୍ଷମା କରିଦେଉଛି । ମୋର ସବୁ ଅଭିମାନ ସେଇ ଭଗବାନଙ୍କଠାରେ । ଲେଖୁ ଲେଖୁ ବୋଧହୁଏ ଚିଠିଟା ଖୁବ୍ ଲମ୍ବା ହୋଇଗଲା , ଭୁଲଥିଲେ କ୍ଷମା ଦେବେ । ଇତି ସୁନୀତା.....

ଚିଠିଟି ପଢୁ ପଢୁ ନୀଳିମା ଦାସ ଆଖି ପୋଛୁଥିଲେ । ଭାବୁଥିଲେ ସକାଳ ହେଲେ ନିଜେ ତା ବସାକୁ ଯାଇ କ୍ଷମା ମାଗିନେବେ । ଚିଠିଟିକୁ ବିଛଣା ଉପରେ ଥୋଇ କେତେବେଳେ ସେ ଶୋଇପଡିଛନ୍ତି , ଜାଣନ୍ତି ନାହିଁ । ହଠାତ୍ ଶିଶିରବାବୁଙ୍କ ଡାକରେ ତାଙ୍କର ନିଦ ଭାଙ୍ଗିଗଲା । ସେ ଉଠିପଡି ଦେଖନ୍ତିତ ଶିଶିରବାବୁ ବିଷର୍ଣ୍ଣ ବଦନରେ ଛିଡା ହୋଇଛନ୍ତି , କଣ ହେଲା , ପଚାରିଲେ ନୀଳିମା ଦାସ୍ ।

ସୁନୀତା ସୁସାଇଡ୍ କରିଛି ।

ପୋଲିସ ବାଲା ଆସିଗଲେଣି , କବାଟ ଭାଙ୍ଗି ଲାସ୍‌ଟିକୁ ପୋଷ୍ଟମର୍ଟମ୍ କରିବା ପାଇଁ ପଠଉଛନ୍ତି । ଭୋ........କରି କାନ୍ଦି ଉଠିଲେ ନୀଳିମା ଦାସ୍ । ହତଭାଗିନୀଟା , ଆମେ ସମସ୍ତେ ତାକୁ ଠକି ଦେଲୁ , ଏ ସମାଜ ମଧ୍ୟ ତାକୁ ଠକିଦେଲା । ସେଥିପାଇଁ ଆମେ ସମସ୍ତେ ଦାୟୀ । ଆଖିରୁ ଲୁହ ପୋଛୁଥିଲେ ନୀଳିମା ଦାସ । ଚିଠିଟା ଫ୍ୟାନ୍‌ର ପବନରେ ଏପଟ୍ ସେପଟ୍ ଉଡିବୁଲୁଥିଲା , ଠିକ୍ ବୃନ୍ତଚ୍ୟୁତ ପତ୍ରପରି ।



# ମରୀଚିକା

ମୋ ସରକାରୀ କ୍ୱାଟରର ଦକ୍ଷିଣ ପଟ ଝର୍କା ସେପଟେ ଦେଖାଯାଏ ଗୋଟିଏ ଘାସ ପଡିଆ, ତା ପରେ କେଇଧାଡି ସରକାରୀ କ୍ୱାଟର ଓ ତା ପଛକୁ ଗୋଟିଏ ଲମ୍ବା ପାହାଡ, ସତେ ଯେମିତି ଲୋକମାନେ ମିଶି ତାର ସର୍ବସ୍ୱ ଲୁଣ୍ଠନ କରିଛନ୍ତି । ପକ୍ଷୀଟିଏ ବସିବାକୁ ମଧ୍ୟ ଆଶ୍ରାଟିଏ ନାହିଁ । ଜଳକା ପଥର ଗୁଡିକ ଜଳ ଜଳ ହୋଇ ଆକାଶକୁ ଚାହିଁଛନ୍ତି । ପାହାଡଟିକୁ ଅନେଇଲେ ସତେ ଯେମିତି ଜୀବନର ଦର୍ଶନ ମିଳିଯାଏ । ମତେ ଲାଗେ ପାହାଡଟା କଣ କିଛି କହିବ କହିବ ହେଉଛି ଯେମିତି । ସେଇ ଲମ୍ବା ପାହାଡ ଉପରେ ନୀଳ ଆକାଶର ବିସ୍ତୃତ ଛାତି , ଆକାଶ ଓ ପାହାଡର ଅପୂର୍ବ ସମନ୍ୱୟ । ଅନେକ ସମୟରେ କାହିଁକି କେଜାଣି ସେଇ ଲମ୍ବା ପାହାଡ ଓ ତା ଉପରେ ଘୋଡେଇ ହୋଇଥିବା ନୀଳ ଆକାଶ ଆଡକୁ ଅଲକ୍ଷ୍ୟରେ ଅନେଇ ରହିବାର ଗୋଟିଏ ବଦଭ୍ୟାସ ହୋଇଯାଇଥିଲା ମୋର ଏ ସ୍ଥାନକୁ ଆସିବା ପରଠୁ । ହୁଏତ ଏହା ମୋର ନିଃସଙ୍ଗ ମୁହୂର୍ତ୍ତର ଦୁର୍ବଳତା ହୋଇପାରେ , ନତୁବା ମୋର ଝର୍କାର ଦୋଷ ମଧ୍ୟ ହୋଇପାରେ , କାରଣ ସେହି କ୍ୱାଟରକୁ ମୁଁ ଆସିବା ପୂର୍ବରୁ ସେଇ ଦକ୍ଷିଣ ପାଖ ଝର୍କାର କବାଟ ଗୁଡିକ ଆଦୌ ନ ଥିଲା । ବହୁ କଷ୍ଟରେ ରାତିରେ ଶୋଇବା ପୂର୍ବରୁ ତାକୁ ପିଚ୍‌ବୋର୍ଡ ଦ୍ୱାରା ବନ୍ଦ କରି ମୋତେ ଶୋଇବାକୁ ହୋଇଥାଏ । ଦିନବେଳେ ପିଚ୍‌ବୋର୍ଡ ଖୋଲିଦେଲେ ପୂର୍ବବତ୍ ଝରକା ସବୁବେଳେ ଉନ୍ମୁକ୍ତ ଥାଏ ।

ଏକା ଏକା ଆଉ ବା କରନ୍ତି କଣ , ସକାଳ ହେଲେ ସୁନେଲି ସୂର୍ଯ୍ୟ କିରଣ ଯେତେବେଳ ସେଇ କଅଁଳିଆ ଦୁବ ଘାସରେ ଭର୍ତ୍ତି ହୋଇଥିବା ପଡିଆରେ ପଡ଼େଁରେ ସେତେବେଳେ ଗାଈ ଓ ବାଛୁରୀଙ୍କ ହମ୍ବାରଡିରେ ମୋ ନିଦ ଭାଙ୍ଗେ । ସହଜରେ ମୁଁ ଜଣେ ଲେଟ୍ ରାଇଜର । ତେଣୁ ମନେ ମନେ ଏଇ ଚତୁଷ୍ପଦି ପ୍ରାଣୀମାନଙ୍କୁ ଗୁଡମର୍ଣ୍ଣିଂ କହି ସ୍ୱାଗତ କରି ନିଜର ଦୈନନ୍ଦିନ ନିତ୍ୟକର୍ମ ସାରେ ।

ଆଉ ଅପରାହ୍ନରେ ସେହି ପଡିଆରେ ପିଲାମାନଙ୍କର କ୍ରିକେଟ ଖେଳର ଆସର ଜମେ । ଭାରି ହୋ ହାଲ୍ଲା ହୁଏ ସେତେବେଳେ ।

ଏଇଟା ମୋ ଅଧ୍ୟାପକ ଜୀବନର ଦଶମ ବର୍ଷ ଓ ଚତୁର୍ଥ ବଦଳି । ବହୁତ ଅନିଚ୍ଛା ସତ୍ତ୍ୱେ ଏଠାକୁ ଆସିବାକୁ ପଡିଲା । କାରଣ ନେତା ଫେତାଙ୍କ ଲାଙ୍ଗୁଡ ଧରି ବଦଳି କ୍ୟାନସେଲ୍ କରିବା ମୋ ପକ୍ଷେ ଆଦୌ ସମ୍ଭବପର ନ ଥିଲା । ନେତାଙ୍କ ଲାଙ୍ଗୁଡ ଧରିବା ମୋ ଜାତକରେ ନାହିଁ ବୋଲି ମୋ ସହିତ ମୋ ସ୍ତ୍ରୀ ସୁମୀର ଅନେକ ଥର ମତାନ୍ତର ହୋଇଛି । ସେ ଅନେକ ଥର ମୋତେ ଭର୍ତ୍ସନା କରି କୁହନ୍ତି କି ଅଧ୍ୟାପକ ହେ ତୁମେ, ପୁଣି ଓଡିଆ ଅଧ୍ୟାପକ, ତୁମେ ପୁଣି ପୁରୁଷ ଲୋକଟି ? କି ପୁରୁଷ ପଣିଆ ଅଛି ତୁମର , ସୁବିଧା ଅସୁବିଧା ସମୟରେ ଲୋକଙ୍କୁ ଖୋସାମତ କରି କାର୍ଯ୍ୟ ହାସଲ କରିବାର ଯୋଗ୍ୟତା ତୁମର ନାହିଁ । ଦେଖୁନ ଦାସ ବାବୁ, ଜେନାବାବୁ ତିନି ତିନି ଥର ବଦଳି କ୍ୟାନସେଲ୍ କରି ନେତାଙ୍କୁ ପଟାପଟି କରି କଳେ ବଳେ କୌଶଳେ ଖୋଦ ରାଜଧାନୀରେ ଆସ୍ଥାନ ଜମେଇ ନିଜର ପିଲା ଛୁଆଙ୍କ ପଡା ପଡି ଦେଖିବା ସହିତ ଫ୍ୟାମିଲି ଲାଇଫ୍ ମେଣ୍ଟେନ୍ କରୁଛନ୍ତି । ସେମାନେ ତ ସେମାନେ, ସେମାନଙ୍କ ସ୍ତ୍ରୀ ମାନେ ଏତେ ପାରିବାର ଯେ ତୁମ କାନ କାଟି ଦେବେ । ତୁମେ ଯଦି କିଛି ନ କରିପାରିବ ତେବେ କୁହ, ମୁଁ ଯାଇ ସେମାନଙ୍କ ମାଧ୍ୟମରେ ତୁମର ବଦଳି କ୍ୟାନସେଲ୍ କରାଇ ଦେବି । ଏହି ଭଳି ଯୁକ୍ତି ତର୍କ ସେଦିନ ସେ ମୋ ସାଂଗରେ କରୁଥିଲେ, ମୁଁ ସବୁ ଚୁପ୍ ଚାପ୍ ହୋଇ ଶୁଣୁଥିଲି, କାରଣ ଚୁପ୍ ଚାପ୍ ହୋଇ ଶୁଣିବା ମୋର ଗୋଟିଏ ଜନ୍ମଗତ ଗୁଣ । ଏହାର ସୁଯୋଗ ନେଇ ଅନେକ ସମୟରେ ସିଏ ମୋ ଉପରେ ବାକ୍ୟବାଣ ପ୍ରୟୋଗ କରନ୍ତି । ସେ ଦିନ ସିଏ ବାକ୍ୟ ବାଣ ପ୍ରୟୋଗ କରି ବିଫଳ ହେବାରୁ ବିରକ୍ତ ହୋଇ କହିଲେ, କଣ ତୁମର କାନ ଅଛି କି ନାହିଁ, ନା ଏକାବେଳକେ ଜଗନ୍ନାଥ ମହାପ୍ରଭୁ ପାଲଟି ଗଲ ? ତୁମର ଯାହା ଇଚ୍ଛା ତୁମେ କର, ମୁଁ କିନ୍ତୁ କହୁଛି, ତୁମ ସହିତ ସେହି ପାହାଡିଆ ଇଲାକାକୁ ଆଦୌ ଯିବି ନାହିଁ । ସେଠି ମୋ ପିଲାଏ ମଣିଷ ହୋଇପାରିବେ ନାହିଁ । ତମେ ତମ ଚାକିରିକୁ ବଞ୍ଚେଇବା ପାଇଁ

ସେଠାକୁ ଯାଇପାର । ପିଲାମାନଙ୍କୁ ନେଇ ମୁଁ ଗାଁକୁ ଯାଉଛି । ସ୍ତ୍ରୀ ଲୋକମାନେ ସତରେ କେତେ ସେଣ୍ଟିମେଣ୍ଟାଲ ଓ ସ୍ୱାର୍ଥପର । ସତକୁ ସତ ସେଦିନ ସିଏ ପ୍ରସ୍ତୁତ ହୋଇ ପିଲାମାନଙ୍କୁ ଧରି ବାହାରି ପଡିଲେ ଗାଁକୁ ଯିବା ପାଇଁ । ମୁଁ ବାଧ୍ୟ ହୋଇ ଅଟୋ ରିକ୍ସାଟିଏ ଡାକିଆଣି ବସ୍‌ଷ୍ଟାଣ୍ଡକୁ ଗଲି ଛାଡିବା ପାଇଁ । ବସ୍‌ରେ ବସିବା ପରେ ପୁଅ ଓ ଝିଅ ହାତ ହଲେଇ ମୋତେ ଟା.. ଟା.. କରୁଥିଲେ , କିନ୍ତୁ ମୋର ସ୍ତ୍ରୀଙ୍କର ମୁହଁ ବିପରୀତ ଦିଗକୁ ଥିଲା । ତା ପରଦିନ ମୁଁ ମୋର ବେଡିଂ ପତ୍ର ଧରି ମୋର କର୍ମକ୍ଷେତ୍ରକୁ ବାହାରି ପଡିଲି ।

କାର୍ଯ୍ୟରେ ଯୋଗଦେବା ପରଠାରୁ ଆଜକୁ ତିନି ମାସରୁ ଊର୍ଦ୍ଧ୍ୱ ହେବ, ଘରୁ ଏ ପର୍ଯ୍ୟନ୍ତ କୌଣସି ଚିଠି ପାଇ ନାହିଁ । ମୋର ତିନି ତିନିଟା ଚିଠିର ଉତ୍ତର ଏ ପର୍ଯ୍ୟନ୍ତ ମିଳି ନାହିଁ । ଗାଁରେ ଟେଲିଫୋନ କରିବାର ସୁବିଧା ମଧ୍ୟ ନାହିଁ । ସେଥିପାଇଁ ମୋତେ ଅସ୍ତବ୍ୟସ୍ତ ଲାଗୁଥାଏ । ମୋ ପିଲାମାନେ କିମିତି ଅଛନ୍ତି ତାଙ୍କ ବିଷୟରେ ଜାଣିବା ପାଇଁ ମୋର ପ୍ରବଳ ଇଚ୍ଛା ହେଉଥାଏ । ମୁଁ ବା କରନ୍ତି କଣ, ଏକା ଏକା ମୁଁ ମୋ କୋଠରୀରେ ବନ୍ଦୀ । ମୋ ଅସହାୟ ଅବସ୍ଥାକୁ ଦେଖି ବିଦ୍ରୂପ କରୁଥାନ୍ତି ମୋ ଖଟ ଉପରେ ପଡିଥିବା କେତେ ଖଣ୍ଡ ଲାଇବ୍ରେରୀ ବହି ଓ ଖବର କାଗଜ । ମୁଣ୍ଡ ଉପରେ ସିଲିଂ ଫ୍ୟାନଟା ଯେପରି ମୋ ମୁଣ୍ଡଟାକୁ ବୁଲାଉଥାଏ ।

ଆଜି କାହିଁକି ସକାଳୁ ବିଛଣାରୁ ଉଠୁ ଉଠୁ ସେଇ ଝର୍କା ଫାଙ୍କ ଦେଇ ପାହାଡଟିକୁ ଅନେଇଲେ ବେଶି ବେଶି ଘରକଥା ମନେ ପଡୁଛି । ବିଶେଷ କରି ପୁଅ ଓ ଝିଅ କଥା । ବଡ ପୁଅକୁ ଜୁଲାଇ ମାସରେ ସାତ ବର୍ଷ ପୁରି ଆଠ ବର୍ଷ ଚାଲିବ ଓ ଝିଅକୁ ଅଗଷ୍ଟ ମାସରେ ପାଞ୍ଚ ବର୍ଷ ପୁରି ଛଅ ବର୍ଷ ଚାଲିବ । ସେମାନଙ୍କର କମନୀୟ ମୁହଁଗୁଡିକ ମୋ ଆଖି ଆଗରେ ଝଲସି ଉଠୁଥାଏ ଓ ମଝିରେ ମଝିରେ ସହଧର୍ମିଣୀଙ୍କର ରାଗୁଆ ରାଗୁଆ ମୁହଁଟି ଦେଖା ଯାଉଥାଏ । ଭାରି **ସେଣ୍ଟିମେଣ୍ଟାଲ** ସିଏ, କିଛି ବୁଝିବ ନାହିଁ , କେବଳ ଯୁକ୍ତି କରିବ ଓ ନିଜ ଜିଦରେ ଅଟଳ ରହିବ । ସେଇଥିପାଇଁ ବହୁତ ସମୟରେ ମୋତେ ନରମିବାକୁ ହୁଏ ଓ ଏଡଜଷ୍ଟ କରିବାକୁ ପଡେ । ଦାମ୍ପତ୍ୟ ଜୀବନର ଅନୁଭୂତି ବଡ ବିଚିତ୍ର, ଏହାକୁ କେବଳ ଅନୁଭବି ମାନେ

ହିଁ ଜାଣି ପାରିବେ ।

ଆଜି ଟ୍ୟୁଟରିଆଲ୍ କ୍ଲାସରେ ମଧ୍ୟ ପଢ଼େଇବା ବେଳେ ଅନ୍ୟମନସ୍କ ଥିଲି । ଦୁଇଜଣ ଛାତ୍ରୀ ମୋ ଅନ୍ୟମନସ୍କତା ଦେଖି କଣେଇ କଣେଇ ଚାହିଁ ମୁରୁକି ମୁରୁକି ହସୁଥିଲେ । ମୁଁ ନିଜକୁ ସତର୍କ କରିନେଇଥିଲି । ସେମାନଙ୍କ ମନରେ ମୋର ଦୁର୍ବଳତା ଯେପରି ପ୍ରକାଶ ନ ପାଏ ସେଥିପାଇଁ ନିଜେ ନିଜକୁ ସଂଯତ କରି ଗମ୍ଭୀର ହୋଇ ପ୍ରଶ୍ନ କରିଥିଲି ଛାତ୍ରୀଟିକୁ , ତମୁର ପରଫରମେନସ୍ ଏତେ ଭଲ ହେଉନାହିଁ ସୁସ୍ମିତା , ଭଲ କରିବାକୁ ଚେଷ୍ଟା କର । ଏତିକିରେ ଛାତ୍ରୀଟି ସଂଯତ ହୋଇ ମୋ କହିବାର ଉଦ୍ଦେଶ୍ୟକୁ ବୁଝି ପାରିଲା ବୋଲି ମୁଁ ଉପଲବ୍ଧି କଲି । ସେଦିନ ଟ୍ୟୁଟରିଆଲ୍ କ୍ଲାସ୍ ଶୀଘ୍ର ସାରି କ୍ୱାର୍ଟରକୁ ଚାଲି ଆସିଲି । ସେଦିନ କାହିଁକି ମୋତେ ଆଦୌ ଭଲ ଲାଗୁନଥିଲା । ମୁଁ ବିବ୍ରତ ହୋଇ ପଡୁଥିଲି , ମନଟା ଭାରାକ୍ରାନ୍ତ ଥିଲା । କିଛି ଖାଇବାକୁ ଇଚ୍ଛା ହେଉନଥିଲା କି ପଢିବାକୁ ଇଚ୍ଛା ହେଉନଥିଲା । ସାର୍ଟ ପ୍ୟାଣ୍ଟ୍ ନ ଖୋଲି ମୁଁ ମୋ ଆରାମ୍ ଚେୟ୍ୟାର ଉପରେ ବସି ସେଇ ଦକ୍ଷିଣ ପଟ ଝର୍କା ସେପଟେ ଥିବା ସେଇ ଲଣ୍ଡା ପାହାଡ ଓ ନୀଳ ଆକାଶକୁ ଅନେଇଥିଲି । ଆକାଶର ନୀଳ ରଙ୍ଗରେ କିଛି ସମୟ୍ ପାଇଁ ମିଶିଗଲି । ଏଇ ଆକାଶ ଅନନ୍ତ ତାର ସୀମା ନାହିଁ , ଏଇ ମନ ମଧ୍ୟ ଅନନ୍ତ , ମନର ସୀମା ନାହିଁ । ଆକାଶର ନୀଳିମାରେ ଜୀବନର ପ୍ରତିଛବି ଦେଖିଲି । ହଠାତ୍ ଆକାଶର ସେଇ ନୀଳ ରଙ୍ଗରୁ ଆଖି ଲଣ୍ଡା ପାହାଡ ତଳେ ଥିବା କ୍ୱାଟର ଉପରକୁ ଚାଲିଗଲା । ସେଇ କ୍ୱାଟରରେ ପୁର୍ବରୁ କେହି ନଥିଲେ , ସେଥିରେ ତାଲା ପଡିଥିଲା ଏବେ କିନ୍ତୁ ଦି ଦିନ ହେଲା କେହି ଜଣେ ଆସି ସେଇ କ୍ୱାଟରରେ ରହୁଛନ୍ତି ତାଙ୍କର ପରିବାର ସହ । ତାଙ୍କ ଘରର ଦ୍ୱାର ଠିକ୍ ମୋ ଝର୍କାର ସାମ୍ନାସାମ୍ନି । ଦେଖିଲି ସେଇ କ୍ୱାଟରର ଦ୍ୱାର ସାମ୍ନାରେ ଝିଅଟିଏ ଚଷମା ଲଗେଇ ଛିଡା ହୋଇଛି, ସାଲୁଆର କାମିଜ୍ ପିନ୍ଧିଛି । ବେଶ ଡଉଲ ଡାଉଲ୍ ଗୋରା ତକ ତକ ଚେହେରା । ବୟସ ବାଇଶି କି ଚବିଶ ହେବ । ମୁଁ ତାକୁ ଦେଖିବା ପୂର୍ବରୁ ତାର ଆଖି ମୋ ଝର୍କା ଭେଦ କରି ଯେପରି ମତେ ହିଁ ଚାହିଁ ରହିଛି । ମୁଁ ଝିଅଟିକୁ କିଛି ସମୟ୍ ଧରି ଚାହିଁଲି ଓ ପରେ ମୋର ଦୃଷ୍ଟି ତା' ଉପରୁ ଫେରେଇ ନେଇ

ଖବର କାଗଜ ଉପରେ ନିବିଷ୍ଟ କଲି । ପୁଣି କିଛି ସମୟ ପରେ ମୁଁ ଦେଖିଲି ସେଇ ଝର୍କା ସେପଟ ଦ୍ୱାର ସାମ୍ନାରେ ଝିଅଟି ସିମିତି ଛିଡା ହୋଇ ପୂର୍ବପରି ମୋତେ ଅନେଇଚି । ମୁଁ ଆଶ୍ଚର୍ଯ୍ୟ ହେଲି , ଝିଅଟି କଣ ସେତେବେଳୁ ସେଇଠି ଛିଡା ହୋଇ ଏକ ଧ୍ୟାନରେ ମୋତେ ହିଁ ଚାହିଁଛି ? ପୁଣି ମୁଁ ଖବରକାଗଜ ପଢ଼ିବାକୁ ଆରମ୍ଭ କଲି ଏବଂ ପୁନର୍ବାର ଦେଖିଲାବେଳକୁ ଝିଅଟି ସେଠାରୁ ଅନ୍ତର୍ଦ୍ଧାନ ହୋଇ ଯାଇଥିଲା । ତହିଁ ଆରଦିନ ଠିକ୍ ସେଇ ସମୟରେ ସେଇ ଝିଅଟିକୁ ସେଇ ଦ୍ୱାର ମୁହଁରେ ଛିଡା ହୋଇଥିବାର ଦେଖିଲି, କେବଳ ଦେଖିଲି ନୁହେଁ, ଝିଅଟି ନିର୍ନିମେଷ ନୟନରେ ମୋତେ ହିଁ ଦେଖୁଥିବାର ତାକୁ ମୁଁ ଆବିଷ୍କାର କଲି । ତାଙ୍କ କ୍ୱାଟର ଓ ମୋ କ୍ୱାଟର ମଧ୍ୟରେ ବ୍ୟବଧାନ ଦୁଇ ଶହ ଫୁଟ ମାତ୍ର । ମୁଁ ବାରମ୍ବାର ସେଇ ଝିଅଟିକୁ ଚାହୁଁଥିଲି, ଦେଖିଲି ତାର ଦୃଷ୍ଟି ମୋ ଉପରେ ନିବିଷ୍ଟ ଥିଲା । ମନେ ମନେ ଭାବିଲି ଝଅଟି କଣ ସବୁଦିନ ମୋ ଉପରେ ଦୃଷ୍ଟି ନିକ୍ଷେପ କରୁଛି, ମୋତେ ତନ୍ମୟ ହୋଇ ଚାହିଁ ରହୁଛି ।ଏହାର କାରଣ କଣ, ଏକ ଧ୍ୟାନରେ ଜଣେ ଜଣକୁ ଅନେ ରହିବା ଦୁର୍ବଳତାର ସଂକେତ ନୁହେଁକି ?ଏହା ଭାବିଲା ବେଳକୁ ମୋର ମନଟା ଚଳଚଞ୍ଚଳ ହୋଇଉଠିଲା, ମନରେ ଉଷ୍ମତା ଜାଗ୍ରତ ହେଲା, ସତେ ଯେମିତି ମୁଁ ମୋର ଅଜାଣତରେ ଝିଅଟିର ନିକଟତର ହେଉଥିଲି । ତାପରଠୁ ଝିଅଟି ମତେ ଦେଖିବା ଓ ମୁଁ ଝିଅଟିକୁ ଦେଖିବା ଏକ ଦୈନନ୍ଦିନ ଅଭ୍ୟାସରେ ପରିଣତ ହୋଇସାରିଥିଲା । ଇତି ମଧ୍ୟରେ ମୁଁ ଝିଅଟିକୁ ଅତି ଆପଣାର କରି ସାରିଥିଲି, ମନେ ମନେ ଦୂରରୁ ସେଇ ଝରକା ଫାଙ୍କ ରୁ ବିନା ବାକ୍ୟାଳାପରେ । ଯେଉଁଦିନଠୁ ମୁଁ ସେ ଝିଅଟିକୁ ଦେଖିବା ଆରମ୍ଭ କଲି ସେଇ ଦିନଠାରୁ ସେଇ ଲଣ୍ଡା ପାହାଡ ଓ ତା ଉପରେ ଝୁଲୁଥିବା ନୀଳ ଆକାଶକୁ ପ୍ରାୟତଃ ମନରୁ ଭୁଲିଯାଇଥିଲି । ଶେଷରେ ଇମିତି ହେଲା ଯେ, ସେଇ ଝର୍କା ଫାଙ୍କ ଦେଇ ଝିଅଟିକୁ ନ ଦେଖିଲେ ମୋତେ ଭାରି ଅଶ୍ୱସ୍ତି କର ବୋଧ ହେଉଥିଲା, କିଛି ଭଲ ଲାଗୁନଥିଲା , କ୍ଲାସ୍‌କୁ ଯିବାକୁ ଇଚ୍ଛା ହେଉନଥିଲା । ମନଟା କାହିଁକି ସେଦିନ ଭାରି ନିରସ ଲାଗୁଥିଲା ଏବଂ ସବୁକିଛି ଶୂନ୍ୟତାରେ ସୀମାବଦ୍ଧ ହେଉଥିଲା ।

ଆଜି ବୁଧବାର , ଅସ୍ରାଏ ବର୍ଷା ହେବା ସାଂଗକୁ କୋହଲା ପାଗ

ଲାଗି ରହିଥଲା । କ୍ଲାସ୍‌ରେ ଛାତ୍ର ଉପସ୍ଥାନ ଖୁବ୍ କମ୍ ଥିଲା । ସତ କହିବାକୁ ଗଲେ କ୍ଲାସ୍ ରେ ସେଦିନ କିଛି ପଢେଇବାକୁ ଇଚ୍ଛା ହେଉନଥିଲା । ମୁଁ ଅନ୍ୟମନସ୍କ ଥିଲି ପୁରାପୁରି । ପିଲାମାନେ ଗପୁଥିଲେ । ସତେ ଯେମିତି ଗୋଟିଏ ପିକ୍‌ନିକ ସ୍ପଟ୍ । କଲେଜ ପିଅନ ଆସି କହିଲା ସାର୍ ମା ଆସିଛନ୍ତି, ଚାବି କାଠି ଦିଅନ୍ତୁ । ପିଅନ ଟାକୁ ଚାବି କାଠି ଦେଇ କ୍ଲାସ୍ ସାରି କ୍ୱାଟରକୁ ଆସିଲି । ପୁଅ ଓ ଝିଅ ଦୁହିଁଙ୍କୁ କୋଳ କରିବା ସମୟରେ ପତ୍ନୀ ମହୋଦୟା ଗୋଟିଏ ଲଫାପା ବଢେଇ ଦେଲେ ମୋ ହାତକୁ , କହିଲେ ଏଇଟି ତୁମର ବଦଳି ଅର୍ଡର, ଭୁବନେଶ୍ୱରକୁ ବଦଳି ହୋଇଛି । ମୁଁ କିଛି କହିବା ଆଗରୁ ସେ ଆରମ୍ଭ କରିଦେଲେ, ମୁଁ ଜାଣିଛି ତୁମ ଦ୍ୱାରା ଶାଗ ସିଝିବ ନାହିଁ, ତୁମେ ବଳଦ ଭଳିଆ ଏଠି ଖଟୁଥିବ ଆଉ ତୁମର ବୁଦ୍ଧିମଧ୍ୟ ବଳଦିଆ । ତୁମ ପିଲା ଓ ସଂସାର ତେଣେ ଭାସିଯାଆନ୍ତୁ, ତୁମେ ଏଇଠି ମୁଣ୍ଡ ଗୁଞ୍ଜିଥିବ, ବଳଦ ଭଳିଆ ଖଟୁଥିବ ଦିନ ଓ ରାତି, ତେଣୁ ମୁଁ ବାଧ୍ୟ ହୋଇ ଜେନା ବାବୁ ଓ ଦାସ ବାବୁଙ୍କ ସ୍ତ୍ରୀମାନଙ୍କ ମାଧ୍ୟମରେ ତୁମରି ଟ୍ରାନ୍‌ଫର ଭୁବନେଶ୍ୱରକୁ କରେଇ ଦେଇଛି । ଆସନ୍ତା କାଲି ସୁଦ୍ଧା ଯେମିତି ରିଲିଫ ହୋଇଯିବ । ଘରର ଚାରିଆଡେ ଆଖି ବୁଲାଇ କହିଉଠିଲେ , ଇସ୍ ଏଇଟା ଘର ନା ଗୁହାଳ, ଏଠି କଣ ମଣିଷ ରୁହନ୍ତି ? କିମିତି ରହିଲ ତୁମେ ଏତେଦିନଏଠି ? କହୁ କହୁ ଘରର ସାମଗ୍ରୀମାନ ଯଥାସ୍ଥାନରେ ରଖି ଘରକୁ ସଜାଇବାରେ ଲାଗିଗଲେ । ମୁଁ ମନେ ମନେ ହସୁଥାଏ, ଆସନ୍ତା କାଲି ରିଲିଫ୍ ହେବି ମାନେ ଘରଛାଡିବି, ଇଏ ପୁଣି ଆସିଲେ ଯେ ଘରେ ମମତା ଲଗେଇଦେଲେ ଓ ଘର ସଜାଡିବାକୁ ଲାଗିଗଲେ । ରାତ୍ରି ଭୋଜନ ପରେ ଟିକିଏ ଆସ୍ୱସ୍ତି ଲାଭ କଲି ସକାଳ କେତେବେଳେ ପାହିଲା ମୁଁ ଜାଣିନାହିଁ । ସକାଳୁ ଉଠୁ ଉଠୁ ଆଠଟା ବାଜିଯାଇଥିଲା । ସେ କିନ୍ତୁ ଆଗରୁ ଉଠି ତାଙ୍କ କାମରେ ଲାଗିଯାଇଥିଲେ । ମୁଁ ଉଠିବା ସଂଗେ ସଂଗେ ଅର୍ଡର ହୋଇଗଲା ତୁମେ ଚଞ୍ଚଳ କଲେଜ ଯାଇ ତୁମର ରିଲିଫ୍ ଅର୍ଡର ନେଇଆସିବ ଓ ଆସିବା ବେଳେ ବସ୍ ରେ ଯିବା ପାଇଁ ଆଡଭାନସ୍ଡ ଟିକେଟ ମଧ୍ୟ ନେଇ ଆସିଥିବ । ଛଅଟା ତିରିଶ ମିନିଟ୍ ରେ ବସ୍ ଅଛି । ମୁଁ ସବୁ ରେଡି କରି ରଖିଥିବି । ତୁମେ ଆସିବା ବେଳେ ଗୋଟିଏ

ରିକ୍ସା ସାଂଗରେ ଆଣିଥିବ । ମୁଁ ମନ୍ତ୍ରମୁଗ୍ଧ ଛାଗପରି ପତ୍ନୀଙ୍କର ସବୁ କଥାରେ ହୁଁ ମାରୁଥାଏ କାରଣ କିତାପଟ ତାଙ୍କର । କଲେଜରୁ ଲାଇବ୍ରେରୀ ବହି ଫେରେଇବା ସହ ରିଲିଫ୍ ଅର୍ଡର ଧରି ଆସୁ ଆସୁ ଚାରିଟା ବାଜିଯାଇଥାଏ । ସୁମୀ ଓ ପିଲାମାନେ ସମସ୍ତ ଜିନିଷ ରେଡି କରି ମୋ ଅପେକ୍ଷାରେ ଥିଲେ । ରିକସାବାଲାକୁ ମଧ୍ୟ ସାଂଗରେ ଆଣିଥିଲି । ସମସ୍ତ ଜିନିଷ ରିକ୍ସାରେ ଲଦି ଆମେ ରିକସାରେ ବସିଗଲୁ । କଲେଜର ପିଅନ୍‌କୁ କ୍ୱାଟର ଚାବିକାଠି ଦେଇ କହିଲି , ଗୁଡ୍‌ବାଏ ।

ମୁଁ ରିକସାରେ ବସୁ ବସୁ ହଠାତ୍ ସେଇ ଲମ୍ବା ପାହାଡ ତଳେ ଥିବା କ୍ୱାଟର ସାମ୍ନାରେ ସେଇ ଝିଅଟିକୁ ଛିଡା ହୋଇଥିବାର ଦେଖିଲି, ସତେ ଯେପରି ସେ ମତେ ହିଁ ଅନେଇଚି ଓ କହୁଚି ଗୁଡ୍‌ବାଏ । ମନଟା ମୋର ବିଷାଦରେ ଭରିଗଲା , ଆଉ ତା ସହିତ ଦେଖା ହୋଇପାରବ ନାହିଁ , ସେଇ ଅନ୍ତରଂଗ ମୁହୁର୍ତ୍ତ ଆଉ ମିଳିବ ନାହିଁ କିମ୍ବା ସେଇ ଅପଲକ ଚାହାଁଣୀର ତୃଷ୍ଣା ମଧ୍ୟ ମେଣ୍ଟିବ ନାହିଁ । ମୁଁ କଳ୍ପନା ରାଜ୍ୟରେ ସଂପୂର୍ଣ୍ଣ ଭାବରେ ନିମଗ୍ନ ଥିଲି । ଅତ୍ୟଧିକ ଭାରି ଯୋଗୁଁ ରିକସାବାଲାଟା ରିକସାଟିକୁ ବହୁ କଷ୍ଟରେ ଟାଣି ଟାଣି ନେଉଥିଲା । ମୁଁ ପଶ୍ଚାତ୍ ମୁଖୀହୋଇ ଅନେଇଥିଲି ଝିଅଟିକୁ । କଣ ଦେଖୁଚ , ପ୍ରଶ୍ନ କଲେ ସୁମୀ । ହଠାତ୍ ମୋର ଧ୍ୟାନ ଭଗ୍ନ ହେଲା । ମୁଁ ଝିଅଟି ଉପରୁ ମୁହଁ ଫେରେଇ ପ୍ରକୃତିସ୍ଥ ହୋଇ କହିଲି, ଦେଖୁନ ସେଇ ଲମ୍ବା ପାହାଡ , ସେଇ ନୀଳ ଆକାଶ, ଦୁହିଁଙ୍କର ସମନ୍ୱୟ ଓ ସମର୍ପଣର ଭାବ । ସିଏ କହିଲେ , ଦେଖୁଛ ସେଇ ଝିଅଟିକୁ । କେଉଁ ଝିଅଟି , ମୁଁ ପ୍ରଶ୍ନ କଲି । ସିଏ କହିଲେ, ଦେଖ ସେଇ ଝିଅଟି , ଦ୍ୱାର ସାମ୍ନାରେ ଛିଡା ହୋଇଛି । ମୁଁ ଜାଣି ଅଜଣା ଭଳି ପଚାରିଲି - କଣ ହେଲା ସେଇଠୁ । ନାଇଁ କିଛି ନାଇଁ ବୋଲି କହିଲେ ସେ, ମୁଁ ପୁଣି ପଚାରିଲେ କଣ ହେଲା ସେଇଠୁ ? କହୁନ କାହିକିଁ , ସେ କହିଲେ କିଛି ନାହିଁ, ପୁଣି କଥାକୁ ଆଗେଇ ନେଇ କହିଲେ , କାଲି ସେଇ ଝିଅଟିର ମା ଆମ କ୍ୱାଟରକୁ ଆସିଥିଲେ ତୁମେ କଲେଜକୁ ଯିବା ପରେ ପରେ । ତାଙ୍କ ଘର ସମ୍ବଲପୁର ମୋଦିପଡାରେ । ତାଙ୍କ ସ୍ୱାମୀ ପିଡବ୍ଲୁଡିର ଆସିଷ୍ଟାଣ୍ଟ ଇଂଜିନିୟର । ଏବେ ଜଏନ୍ କରିଛନ୍ତି ଏଠି । କ୍ୱାର୍ଟରକୁ ମଧ୍ୟ ଏବେ ଆସିଛନ୍ତି । ସେ ଝିଅଟି ତାଙ୍କର ବଡଝିଅ । ତା ତଳେ ଆହୁରି

ଦୁଇପୁଅ ଓ ଗୋଟିଏ ଝିଅ ।ସେଇ ଝିଅଟିର ବାହାଘର ହୋଇପାରୁନାହିଁ ,ତାର ମା ସେଥିପାଇଁ ଭାରି ବ୍ୟସ୍ତ ହୋଇ କହୁଥିଲେ ଓ କହୁ କହୁ କାନ୍ଦି ପକଉଥିଲେ । ମୁଁ ହସ୍ତକ୍ଷେପ କରି କହିଲି , ତୁମ ମାଂନକର କଥାର ଶେଷ କେବଳ ମାତ୍ର ବାହାଘର ହେବାରେ ଓ ଶେଷରେ କାନ୍ଦିବାରେ । ସେ ଟିକିଏ ଗମ୍ଭୀର ହୋଇ କହିଲେ - ନା.... ନା.. ସେ କଥା ନୁହେଁ , ଝିଅଟି ସମ୍ପୂର୍ଣ୍ଣ ରୂପେ ଅନ୍ଧୁଣୀ , ତାକୁ ଦେଖାଯାଏ ନାହିଁ । କେବଳ ଚଷମା ଲଗାଇଲେ ଝାପସା ଝାପସା ହୋଇ ଦେଖାଯାଏ । ମୁଁ ଆଉ ଥରେ ପଛକୁ ଅନେଇଲା ବେଳକୁ ସେ ଝିଅଟି ସେଠାରେ ନଥିଲା । ପଡିଆରେ ପିଲାଗୁଡିକ କ୍ରିକେଟ୍ ଖେଳରେ ବ୍ୟସ୍ତ ଥିଲେ । ମଝିରେ ମଝିରେ ଭାରି ଜୋର୍ ହୋ ହାଲ୍ଲା କରୁଥିଲେ । ସୁମୀ ଯ୍ୟାଡୁ ସ୍ୟାଡୁ କଣ କହୁଥିଲେ , ମୁଁ ଚୁପ୍ ଚାପ୍ ଶୁଣୁଥିଲି । ମନେ ମନେ କହୁଥିଲି ଧନ୍ୟ ଏ ନାରୀ ଜାତି , ମୁଁ ଏଠି ଏତେ ଦିନ ରହି କିଛି ଜାଣି ପାରିଲି ନାହିଁ , ମାତ୍ର ଏଇ ଦୁଇଦିନ ରହଣି ଭିତରେ ତାଙ୍କୁ ମିଳିଗଲା ସାଇ ପଡିଶାର କେତେ ଖବର । ମୁଁ ମୋର କଳ୍ପନାରେ ପୁଣି ସେଇ କ୍ୱାଟର କୋଠରୀ ମଧ୍ୟକୁ ଫେରିଗଲି ଓ ସେଇ ଝରକା ଫାଙ୍କ ଦେଇ ଦେଖୁଥିଲି ସେଇ ନୀଳ ଆକାଶ ଓ ଲଣ୍ଡା ପାହାଡକୁ ।

ମନେ ମନେ ଭାବୁଥିଲି କିଛି ସମୟ ପରେ ଝିଅଟି ପୁନର୍ବାର ଆସି ଛିଡା ହେବ ତାର ଦ୍ୱାର ସାମ୍ନାରେ । ମାତ୍ର ମୋର ମାନସଚକ୍ଷୁ ବହୁ ସମୟ ପର୍ଯ୍ୟନ୍ତ ତାର ଦର୍ଶନ ପାଇଁ ଉଦ୍‌ବିଗ୍ନ ହୋଇଉଠିଲା , କିନ୍ତୁ ଝିଅଟିର ଆଉ ଦେଖା ମିଳିଲା ନାହିଁ । ରିକସାଟା ଅନେକ ବାଙ୍କ ଭାଙ୍ଗି ଆଗେଇ ଯାଇଥିଲା ମୁଁ କେବଳ ଫେରି ଫେରି ଯାଉଥିଲି ପଛକୁ , ସେଇ ଆବଦ୍ଧ କୋଠରୀ ମଧ୍ୟକୁ । ମୋ ଆଖିରେ ସେ ଝିଅଟିର ମୁହଁ ଝଲ୍‌ସି ଉଠୁଥିଲା । ତାର ଓଠ ଥରି ଉଠୁଥିଲା , ତାର ପ୍ରଶ୍ନିଳ ଆଖି ମୋତେ ପଚାରୁଥିଲା ଅନେକ ପ୍ରଶ୍ନ । ମୁଁ ନିର୍ବାକ୍ ଥିଲି । ସନ୍ଧ୍ୟା ନଇଁ ନଇଁ ଆସୁଥିଲା , ମୁଁ ଉପଲବ୍ଧି କଲି ଝିଅଟି ପୁନର୍ବାର ତାର ଦ୍ୱାର ସାମ୍ନାରେ ଦଣ୍ଡାୟମାନ ହୋଇ ମୋର ଝରକା ଉପରେ ଦୃଷ୍ଟି ନିକ୍ଷେପ କରୁଚି । ତାର ଦୁଇ ଆଖିରୁ ବହିଯାଉଛି ଶ୍ରାବଣର ଅବିଶ୍ରାନ୍ତ ଝର । ମୋତେ ଲାଗିଲା ସତେ ଯେମିତି ଝିଅଟି ହାତ ପ୍ରସାରି ମୋତେ ମାଗୁଛି ଆଶ୍ରୟ । ତାର ହାତ ଲମ୍ବି ଆସୁଛି ମୋ ପାଖକୁ , ମୋ ହାତକୁ ଧରି ସେ କହୁଛି , ତୁମେ କଣ ସତରେ ମୋତେ ଛାଡି ସବୁଦିନ ପାଇଁ ଚାଲିଯାଉଛ ?

ବସ ଷ୍ଟାଣ୍ଡରେ ମୁଁ ରିକସାରୁ କେତେ ବେଳେ ଓହ୍ଲେଇ ପଡିଲିଣି ଜାଣେନା । ମୋ ପିଲାମାନେ ବସ୍‌ରେ ଉଠିସାରିଲେଣି । ସ୍ୱାମୀ ରିକସାରୁ ସମସ୍ତ ଜନିଷପତ୍ର ନେଇ ବସରେ ଥୋଇଲେଣି । ମୁଁ ସିମିତି ଛିଡା ହୋଇଛି । ରିକସାବାଲାଟାବି ମୋତେ ପଇସା ମାଗୁନାହିଁ ।ସିଏ ବି ସେମିତି ଛିଡା ହୋଇଛି । ସ୍ୱାମୀ ମୋତେ ହଲେଇ ଦେଇ କହିଲେ , କଣ ଏମିତି ଅନ୍ୟମନସ୍କ ହୋଇଛ ? କଣ ଏ ଜାଗାକୁ ଛାଡିଯିବାକୁ ତୁମର ଇଚ୍ଛା ନାହିଁକି ? ରିକସାବାଲାକୁ ପଇସା ଦିଅ , ପିଲାମାନେ ତାଙ୍କ ସିଟରେ ବସିଲେଣି । ମୁଁ ମନ୍ତ୍ରମୁଗ୍ଧ ଛାଗ ପରି ରିକ୍‌ସାବାଲାକୁ କେତେ ପଇସା ଦେଲି ଜାଣେନା । ରିକ୍‌ସାବାଲାଟା କେତେବେଳୁ ସେଠାରୁ ଚାଲି ଗଲାଣି ତାହା ମଧ୍ୟ ଜାଣେନା । ବସ୍‌ଟା ହର୍ଣ୍ଣଦେଇ ଷ୍ଟାର୍ଟ କଲା ।

ମୁଁ ପ୍ରକୃତିସ୍ଥ ହେଲି । ଶେଷରେ ସେଇ ଲଣ୍ଡା ପାହାଡ ଉପରେ ଆଖି ବୁଲେଇ ଆଣିଲି । ଆଶ୍ଚର୍ଯ୍ୟ , ସେଇ ଲଣ୍ଡା ପାହାଡ ଉପରେ ମୁଁ ଦେଖିଲି ସେଇ ଝିଅଟିର ଲୋତକାପ୍ଲୁତ ମୁହଁ , ସତେ ଯେପରି ସେ ହାତ ବଢ଼େଇ ମତେ ଆଶ୍ରୟ ମାଗୁଛି । ମୁଁ ଭୟରେ ସେ ସ୍ଥାନରୁ ଦୌଡି ପଳଉଚି । ଗୋଟିଏ ଦୀର୍ଘ ନିଶ୍ୱାସ ମୋ ଛାତିରୁ ବାହାରି ଆସିଲା । ମୋର ଏଇ ଅବସ୍ଥା ଦେଖି ଲଣ୍ଡା ପାହାଡ ଓ ଆକାଶ ଦୁହେଁ ହସୁଥାନ୍ତି । ମୁଁ ନିସ୍ତେଜ ଓ ମ୍ରିୟମାଣ ହୋଇଯାଉଥିଲି । ମୁଁ କିନ୍ତୁ ବସ୍‌ରେ ମୋ ସିଟରେ ବସିଥିଲି , ମୁଁ ଜାଣେନା ମୁଁ ଆଉ କଣ ସବୁ ଭାବୁଥିଲି ଆଖି ବନ୍ଦ କରି । ଝିଅଟା କିନ୍ତୁ ମୋର ବନ୍ଦ ଆଖି ଭିତରେବି ମୋତେ ଦେଖା ଯାଉଥିଲା ।



# ନିରୁଦ୍ଦିଷ୍ଟ ଇଲାକାର ମଣିଷ

ଅଫିସରୁ ବାହାରୁ ବାହାରୁ ନବ ବାବୁଙ୍କର ପ୍ରାୟ୍ ସବୁଦିନ ଡେରି ହୋଇଯାଏ । ବଡବାବୁ ସିଏ, ଦାୟିତ୍ୱ ତାଙ୍କ ଉପରେ ବେଶି । ଟୋକାଳିଆ ହାକିମ, ସବୁ କଥାରେ ବଡବାବୁଙ୍କୁ ଡାକ । ଚଷମା ଫାଙ୍କରେ ଅନେଇ ଗୋଟିଏ କାଇଦାରେ କଥାଟିକୁ ପ୍ରକାଶ କରିବାର ଶୈଳୀ ତାଙ୍କୁ ଭଲଭାବରେ ଜଣା । ଅନ୍ୟମାନେ କେହି ହାକିମଙ୍କ ପାଖକୁ ଗଲେ ସୁଦ୍ଧା ଡକା ପଡିବ ବଡବାବୁଙ୍କୁ । ବଡବାବୁ ଯେଉଁ ଦିନ ନଥାନ୍ତି, ହାକିମ ମହାଶୟ୍ କୁଆଡେ ଯ୍ୟାଡୁ ସ୍ୟାଡୁ ଫାଇଲରେ ଗୁଡାଏ ଲେଖି ପକାନ୍ତି । ଅଫିସରେ ସମସ୍ତେ ଭାବନ୍ତି ହାକିମଟା ପୁରାପୁରି ବଡବାବୁଙ୍କ ବୋଲକରା ।

ପାନଖଣ୍ଡେ ପାଟିରେ ଗୁଞ୍ଜି ନବବାବୁ ତାଙ୍କର ସେଇ ଚିରାଚରିତ ପୁରୁଣା ସାଇକେଲ ଉପରେ ଚଢିଗଲେ, ସାଇକେଲର ସିଟ୍ ସହିତ ଚେନ୍, ଚକ ଇତ୍ୟାଦି ମିଶି ଗୋଟିଏ ବିଚିତ୍ର ଶବ୍ଦ ସୃଷ୍ଟି କରନ୍ତି, ମନେହୁଏ ସାଇକେଲଟି ତାର ଅନିଚ୍ଛାସତ୍ତ୍ୱେ ଚାଲୁଛି, ଜବରଦସ୍ତ ତାକୁ କିଏ ପେଲି ନେଉଛି । କ୍ୱାର୍ଟର ଆହୁରି ଖଣ୍ଡେ ବାଟ ଅଛି, ହଠାତ୍ ସାଇକେଲର ଚେନ୍‌ଟା ଖସିଗଲା । ବାଧ୍ୟ ହୋଇ ଅନ୍ଧାରରେ ଅନ୍ୟଉପାୟ୍ ନପାଇ ସାଇକେଲଟିକୁ ପେଲି ପେଲି ଦ୍ୱାର ସାମ୍ନାରେ ପହଞ୍ଚିଲା ବେଳକୁ କଳାବତୀଙ୍କ ପାଟି କାନରେ ତାଙ୍କର ଶୁଣାଗଲା, ତେଣୁ ସେ ଘର ଭିତରକୁ ହଠାତ୍ ପଶି ନଯାଇ ଟିକିଏ ଛିଡା ହୋଇଗଲେ ଦ୍ୱାର ସାମ୍ନାରେ । ଦିନେ ଦିନେ ଇମିତି ବେଳ କାଳ ପଡିଯାଏ, ଥରେ ନୁହେଁ ଅନେକଥର । ସମୟ୍ ବିତେଇବାକୁ ପଡେ ଅଯଥାଟାରେ ଦୁଆରମୁହଁରେ, ସେ ସ୍ପଷ୍ଟ ଶୁଣି ପାରୁଥାନ୍ତି, ସେଦିନ କଳାବତୀଙ୍କର କଣ୍ଠସ୍ୱର, ଆଲୋ ହେ, ତୁ ମୋ ଚାକରାଣୀ ନା, ମୁଁ ତୋ ଚାକରାଣୀ । ତୋତେ ସବୁଦିନ ଶୁଆକୁ ପାଠ ପଢାଇଲା ଭଳିଆ କହୁଛି, ଟିକିଏ ଜଲଦି ଆସିବୁ, ଡେରି କରିବୁ ନାହିଁ, ପିଲାଛୁଆ ଘର ବାସନ କୁସନ୍ ମାଜିଲେ ଯାଇ ହାଣ୍ଡି ଚୁଲିକି ଯିବ । ବାବୁ ଆସିଲେ ଆଗେ ଚା-ଜଳଖିଆ ମାଗିବେ । ପିଲାମାନେ ଆସିଲେ ଆଉ

ରକ୍ଷା ନାହିଁ । ତୋର କେତେ ଛଇ, କେଉଁଦିନ ମୁଣ୍ଡବଥା ତ କେଉଁଦିନ ବାନ୍ତି । ଦୁନିଆରେ କଣ ଆଉ କାହାରି କିଛି ହୁଏ । ସବୁ ରୋଗ ତ ତୋ ଦେହରେ ବସା ବାନ୍ଧି ରହିଛନ୍ତି । ତୋତେ ଯେତିକି ଆଦର କଲାବେଳକୁ ତୋର ସେତିକି ଫୁଲୁଛି । କହିଲା ପୁରା ମୁଣ୍ଡ ଯଦି ବଥଉ ନଥିବ ତାହେଲେ ଚାକରାଣୀ ରଖିବ । ୟାଙ୍କୁ ଜମାରୁ ଦୟା ଦେଖେଇବ ନାହିଁ । ଇମିତି ଆହୁରି ଅନେକ ଶବ୍ଦ ପବନରେ ମଳେଇ ଯାଉଥାଏ । ନବ ବାବୁ ଆଉବା କେତେ ସମୟ ବାହାରେ ଠିଆ ହୋଇଥାନ୍ତେ, ସାଇକେଲଟିକୁ ଭାରଣ୍ଡାରେ ରଖି ଦେଇ ଗଳାଖିଙ୍କାରି ମାରି ଭିତରକୁ ପଶୁ ପଶୁ ଶବ୍ଦଟା ବାହାରି ଗଲା ପାଟିରୁ, କଣ ହେଲା ?

ଆଉ କଣ ହୁଅନ୍ତା, କହି ଉଠିଲେ କଳାବତୀ, ତୁମେତ ସକାଳ ନଅଟାରୁ ରାତି ନଅଟା ଅଫିସରେ । ଅଫିସ ଭଲତ ତୁମେ ଭଲ । ତୁମେ କଣ ଘର କଥା କିଛି ବୁଝ ? ଚାକିରୀ ତୁମେ ଏକା କରିଛ ଦୁନିଆରେ, ଆଉ କଣ କେହି ଚାକିରୀ କରିଛନ୍ତି? କିଏ ଜାଣେ, ଆଉ କଣ କରୁଥିବ ଅଫିସରେ । ଅଫିସରେ ତ ତୁମର କିଏ କେତେ ଥିବେ ।

ସ୍ତ୍ରୀର ଚିଡି ଚିଡା ମିଜାଜ ଆଗରୁ ନଥିଲା, ଏବେ ଦିନ କୁ ଦିନ ବଢି ବଢି ଚାଲିଛି । କଥାରେ ପୂର୍ଣ୍ଣଛେଦ ପଡେନାହିଁ । ଜଣେ ବ୍ଲଡ୍ ପ୍ରେସର ରୋଗୀ । ଡାକ୍ତର ମଧ୍ୟ ମନା କରିଛନ୍ତି ସବୁବେଳେ ଟେନ୍‌ସନ୍ ନ ନେବାପାଇଁ । ହେଲେ ସିଏ କଣ କିଛି ଶୁଣିବ । ତାହେଲେ ଏହାର କାରଣ କଣ । ବୁଢୀ ଆଜି ଏତେ ଗରମ ଖାଉଛି କାହିଁକି ମନେ ମନେ ଭାବିଲେ ନବବାବୁ । କଭର ନ ଥିବା ସେଇ ଅଧାଛିଣ୍ଡା ସୋଫା ଉପରେ ବସି ପଡି ଚିନ୍ତାମଗ୍ନ ହେଲେ । ତା ହେଲେ କଣ ଅଫିସରୁ କେହିଜଣେ ଫୋନ କରି ଅଫିସର ଘଟଣାବଳୀ ସବୁ ୟାଙ୍କୁ ସ୍ୟାଙ୍କୁ ତାଙ୍କ ବିରୁଦ୍ଧରେ କହୁଛି । ଆଜି ଦିନର ଘଟଣାସବୁ ମନେ ପକେଇଲେ । ମିଶ୍ରବାବୁ, ଦାସବାବୁ, ସାହୁବାବୁ ସମସ୍ତେ ଭାରି ଜୋରରେ ହସୁଥିଲେ, କିଛି କାରଣ ଥିଲା ପରି ଲାଗିଲା ତାଙ୍କୁ । ବିନା କାରଣରେ ସେମାନେ ହସିବା ଜନ୍ତୁ ନୁହନ୍ତି । ସେମାନଙ୍କର ହସିବାର ଗୋଟିଏ

ଉଦ୍ଦେଶ୍ୟ ଥିଲା ପରି ଲାଗିଲା ନବ ବାବୁଙ୍କୁ । ମିଶ୍ରବାବୁଟା ଭାରି କୁହାଳିଆ, ଧରାଛୁଆଁ ଦବା ଜନ୍ତୁ ନୁହେଁ । ପାଞ୍ଚ ପାଞ୍ଚଟା ଜାଗାରୁ ବାହାଘର ପ୍ରସ୍ତାବଗୁଡ଼ିକ ପକେଟରେ ପୁରେଇ ଖାଲି ତହରାମି କରୁଥିବ । କେଉଁ ଝିଅ କେମିତି, ଶ୍ୱଶୁର ଘରୁ କଣ କଣ ସବୁ ଯୌତୁକ ଆଣିବ ଇତ୍ୟାଦି । ସତେ ତ ଆଜି ଅଫିସରୁମ୍ ଭିତରକୁ ପଶୁ ପଶୁ ନମସ୍କାରଟି ଠୁକି ପଚାରୁଥିଲା, ମାଉସୀ କଣ କହୁଥିଲେ, କଣ ତରକାରୀ ଇତ୍ୟାଦି....

ଏବଂ ସଙ୍ଗେ ସଙ୍ଗେ ଅନ୍ୟମାନେ ଏକାଥରେ ହସି ଉଠିଥିଲେ । ନବବାବୁଙ୍କୁ ଏହା ଆଦୌ ଭଲ ଲାଗିନଥିଲା, ହେଲେ ସେ ଚୁପ୍ ଚାପ୍ ନିଜ ସିଟ୍‌ରେ ଯାଇ ବସିଥିଲେ ଗମ୍ଭୀର ହୋଇ ।

ମନେ ମନେ ଭାବୁଥିଲେ ନବବାବୁ, ଶଃ.... କଥାଟା ଏଇଠି ଅଛି ପରା । ସେ ଦିନ ସେ ଅଫିସ ରୁମ୍‌କୁ ଯିବା ପୂର୍ବରୁ ତାଙ୍କ କାନରେ ବାଜିଥିଲା । ମିଶ୍ରବାବୁ କହୁଥିଲେ ବୁଢାଟା ଭାରି ନୁଙ୍ଗୁରା । ଅନ୍ୟମାନେ ଅଂଶଗ୍ରହଣ କରୁଥିଲେ । ମିଶ୍ରବାବୁ କହୁଥିଲା, ମୁଁ ପରା ନିଜେ ଦେଖିଛି ଅଫିସରଙ୍କ ରୁମ୍ ଭିତରେ ଅଫିସ୍ ଛୁଟି ହେବାପରେ ସେଇ ଟୋକୀଟା ସହିତ ମୁହଁକୁ ମୁହଁ ଯୋଡି କଣ କଥା ହେଉଥିଲେ । ହସରେ ଦୁହେଁ ମସଗୁଲ ଥିଲେ । ବୁଢା ଚୋରା ପୀରତି କରିବାରେ ଧୁରନ୍ଧର । ମୁଁ ମୋର ହେଲମେଟ୍‌ଟା ନେବାକୁ ଭୁଲିଯାଇଥିଲି, ଫେରି ଆସି ଯେତେବେଳେ ହଠାତ୍ ଦୁଆରଟା ଖୋଲି ଦେଲି ବୁଢାତ ପୁରା ନର୍ଭସ । ଇମିତି ଏ ବୁଢାରଗୁଣ । ସବୁ ଜାଣିଚି ବୁଢୀ । ବୁଢୀ ପରା ଦିନେ ଦିନେ ଯ୍ୟର ଦାନା ବନ୍ଦ କରିଦିଏ । ବୁଢା ଅଫିସକୁ ଆସି ଖାଲି ବିସ୍କୁଟ୍ ଓ ଚା ଖାଇ ଦିନ କାଟେ । ପଚାରିଲେ କୁହେ ଆଜି ମୋର ଏକାଦଶୀ । ଦିନେ ବୁଢାକୁ ପଚାରିଲି ବଡବାବୁ ସିଏ କିଏ କି, ବୁଢା ପରା କହିଲା, ସିଏ ତା ମାଉସୀ ପୁଅ ଭାଇର ଶଳାର ଝିଅ, ମାନେ ଝିଆରୀ । ଡି.ପି.ଆଇ ଅଫିସ୍‌ରେ ଷ୍ଟେନୋ ଅଛି, ସମସ୍ତେ ହସିଉଠିଥିଲେ ଏକାବେଳେ ।

ଶଳା ସବୁ ବଦମାସ୍, ସମସ୍ତେ ପାଜି ହଠାତ୍ ଶବ୍ଦ ଗୁଡାକ ତାଙ୍କ

ପାଟିରୁ ବାଟୁଳି ଭଳିଆ ବାହାରି ଆସିଲା । କଳାବତୀଦେବୀ ନିଜ ଭାଷା ଓ ଶବ୍ଦର ବିନ୍ୟାସ କରିସାରି ରୋଷେଇ ଘରମୁହାଁ ହୋଇ ଆସୁଥିଲେ । ଶଳା ଶବ୍ଦଟି ଯେମିତି ତାଙ୍କ ବାପାଙ୍କ ଉଦ୍ଦେଶ୍ୟରେ ପ୍ରୟୋଗ କଲାଭଳିଆ ଜଣାଯିବାରୁ ଘାଇଲା ବାଘୁଣୀପରି ପଛକୁ ଡେଇଁ ପଡି ଗର୍ଜି ଉଠିଲେ, କଣ ହେଲା, ମୋ ବାପା ତୁମର ଶଳା । ପରିସ୍ଥିତିଟା ଗୋଟିଏ ଭୟଙ୍କର ମୋଡ ନେବା ପୂର୍ବରୁ ବଡ ଝିଅ, ଲୁସି ଘର ଭିତରକୁ ପଶିଆସି ଗେହ୍ଲେଇ ହୋଇ କହିଲା, ବାପା- ମୋର କାଲି ପାଞ୍ଚଶହ ଟଙ୍କା ଦରକାର । ମୋର ଟିଉସନ ଫିସ୍ ଓ ଖାତା, ବହି ଇତ୍ୟାଦି କିଣିବାକୁ ପଡିବ । ଝିଅ ସହିତ ପାଳି ଧରି କଳାବତୀ ଦେବୀ କହି ଉଠିଲେ, ଆଉ ତାଙ୍କର କଣ ଅଛି ଯେ ସିଏ ତତେ ଟଙ୍କା ଦେବେ । ତାଙ୍କ ଘର ତ ତାଙ୍କ ଅଫିସରେ ଅଛି । ଯବନିକା ପତନ ହୋଇ ଆସୁଥିବା ଜାଣି, ନବବାବୁ ତାଙ୍କର ଚନ୍ଦା ମୁଣ୍ଡରେ ଅସହାୟ ହାତଟିକୁ ବୁଲାଉ ବୁଲାଉ ମନେ ମନେ କହୁଥିଲେ, ଆରେ ମିଶ୍ରପୁଅ ତୁ ଦିନେ ନା ଦିନେ ମୋ ପରି ଅବସ୍ଥାରେ ନିଶ୍ଚୟ ପଡିବୁ । ଲୁସି ଚା, ପ୍ଲେଟ୍‌ଟା ହାତରେ ଧରେଇ ଦେଇ କହିଲା, ବାପା ଏତେ ଚିନ୍ତା କାହିଁକି କରୁଛ, ଯଦି ଟଙ୍କା ଯୋଗାଡ ହୋଇ ପାରୁନାହିଁ, ଦୁଇ ଦିନ ପରେ ଦେଲେ ବି ଚଳିବ । ଏଇ ନିଅ ଚା ପିଇ ଦିଅ । ଟଙ୍କା ପାଇଁ ଏତେ ଚିନ୍ତା କର ନାହିଁ । ବେଶି ଟେନ୍‌ସନ୍ ନେଲେ ବ୍ଲଡ ପ୍ରେସର ବଢିବ । ଦେଖୁଚ ବୋଉର ଅବସ୍ଥା, ସବୁଦିନ କେତେ ମେଡିସିନ୍ ଖାଉଛି । ଆଜିକାଲି କେତେବେଳେ କେଉଁ ମୁହୂର୍ତ୍ତରେ ବ୍ଲଡ୍ ପ୍ରେସର୍ ବାହାରିବ ଡାକ୍ତର ମଧ୍ୟ କହି ପାରିବେ ନାହିଁ ।ତଥାପି ସବୁଜାଣିଶୁଣି ମଧ୍ୟ ପାଟି ଖୋଲିଲେ ବୋଉର ପାଟି ବନ୍ଦ ହେବାକୁ ନାହିଁ ।

ସୀମା, ଚାକରାଣୀଟା କେତେବେଳୁ ଚାଲିଗଲାଣି । ଭାବୁଥିଲା ବାବୁଙ୍କୁ କିଛି ଟଙ୍କା ମାଗିବ, କିନ୍ତୁ ଏପରି ଅବସ୍ଥା ଯେ ସୃଷ୍ଟି ହେବ, ତାହା ସେ ଆଦୌ ଭାବି ନ ଥିଲା । ଦରକାର ବେଳେ ମାଆଙ୍କୁ ନ ମାଗି କେତେଥର ବାବୁଙ୍କ ପାଖରୁ ଟଙ୍କା ନେଇଛି , ଦେହ ପାଆ ଖରାପ ହେଲେ ବାବୁ ଟଙ୍କା ଦେଇଥାନ୍ତି । ବାବୁଙ୍କ ହାତ ଟିକିଏ ଖୋଲା । ମାଗିଲେ ମନା କରନ୍ତି ନାହିଁ ।

ଝିଅଟା ଶୋଇଛି । ତା ଦେହରେ ହାତ ବୁଲେଇ ଆଣିଲା ସୀମା, ଓଃ କି ତାତି । ବୋଧହୁଏ ମ୍ୟାଲେରିଆ ଜ୍ୱର ହୋଇଥିବ । କୁଇନାଇନ୍ ଟାବଲେଟ୍ ଗୁଡାକ ଝିଅଟା ଖାଉନାହିଁ, ବାନ୍ତି କରି ପକଉଛି । ବାପଟା ଥିଲେ କିଛି କଣ ଗୋଟେ କରନ୍ତା । ରାତି ବିତି କଥା, ପୁଣି ମାଇପିଟା କଣ କରିବ, କୁଆଡେ ଯିବ, କାହାକୁ ଡାକିବ । କି ହୀନ କପାଳୀଟା ।

ଦୁଇବର୍ଷ ହେଲା ସ୍ୱାମୀ ତାର ମରିଯାଇଛି । ରିକ୍ସାଟାଣି କିଛି ହେଲେ ଦୁଇ ପଇସା ଘରକୁ ଆଣୁଥିଲା, ମଝିରେ ମଝିରେ ଅବଶ୍ୟ ମଦପିଇ ପିଟା ମରା କରୁଥିଲା, ଯେତେ ହେଲେ ସ୍ୱାମୀତ ଆଉକଣ କେହି ତା ସ୍ଥାନ ପୂରଣ କରିପାରିବ ।ଝିଅଟା କିଛି ଖାଇନାହିଁ ସକାଳଠୁ । ଆଖି ପୋଛିଲା ସୀମା ଖଟ ଉପରୁ ଉଠି ଆସି ଠିଆ ହେଲା ଦୁଆରମୁହଁରେ ବାହାରେ କିଟି କିଟି ଅନ୍ଧାର । ରାତି କେତେହେବ ତାକୁ ଜଣା ନାହିଁ । ରାସ୍ତା ଉପରେ ଦୁଇ ଚାରିଟା କୁକୁର ଭୁକି ଭୁକି ଏଣେ ତେଣେ ଦୌଡା ଦୌଡି କରୁଛନ୍ତି । ଗୋଟିଏ ଅନ୍ୟକୁ ଆକ୍ରମଣ କରିବାରୁ ଅନ୍ୟଟି ଅସହାୟ ହୋଇ କେଁ କାଁ ରଡି ଛାଡୁଛି । ଏଠି ଜୀବନର ଅର୍ଥ କେବଳ ଯନ୍ତ୍ରଣା, ତିକ୍ତ ଅନୁଭୂତି, ତଥାପି ବଞ୍ଚିବା ପାଇଁ ଅନେକ ପ୍ରୟାସ, ଅନେକ ବାହାନା, ସତ ମିଛର ଅଭିନୟ ।

ଏତିକି ବେଳେ ଝିଅଟା କାନ୍ଦି ଉଠିଲା । ସେ ଘର ଭିତରକୁ ପଶିଯାଇ କବାଟଟାକୁ ବନ୍ଦ କଲା । ଝିଅଟିର ମୁଣ୍ଡ ଉପରେ ହାତ ରଖିଲା । ଓଃ କି ତାତି । ଝିଅଟି ଥରୁଛି, ଦେହରୁ ଝାଳ ବୋହୁଛି, ମଝିରେ ମଝିରେ ସେ ପାଣି ମାଗୁଛି । ପାଣି ପିଇଲେ ବାନ୍ତି କରି ପକଉଛି ।

ଘରୁ ପଦାକୁ ବାହାରି ଆସିଲା ସୀମା ଏଥର । ପାଖଘର ଦୋ ମହଲା ଉପରେ ନାଚ ଗୀତ, ହୋ.....ହାଲ୍ଲା ଓ ଟେବୁଲ ବାଡେଇବା ଶବ୍ଦ ଶୁଣାଯାଉଛି । ଏତେ ରାତିରେ ମହାପାତ୍ର ବାବୁ କଣ ଶୋଇନାହାନ୍ତି ? ହଁ, ମହାପାତ୍ର ବାବୁ ଜଣେ ସ୍ପେଶାଲ କ୍ଲାସ୍ କଣ୍ଟ୍ରାକ୍ଟର । ଲୋକଟି ଆଦୌ ଭଲ ନୁହେଁ । ତାର ପାଟେରୀ

ପାଖ କାନ୍ଥକୁ ଲଗେଇ ସରକାରୀ ଜମିରେ ତାର ସ୍ୱାମୀ ଯେତେବେଳେ ପ୍ରଥମେ କୁଡିଆଟିଏ ବନେଇଲା, ସେତେବେଳେ ସେ ନିଜେ ଆସି କେତେ ଝମେଲା କଲା, କହିଲା, ମୋ ପାଚେରୀକୁ ଲଗେଇ ଘର କରନା, ଏଠି ତୁମେ ସବୁ ଘର ତିଆରି କରି ଅପନା କରିବ, ପରିବେଶ ଦୂଷିତ କରିବ, ଶେଷରେ ରାତିରେ ମଦପିଇ ପାଟି ହୁରି କରି ଲୋକଙ୍କ ଜିନା ହାରାମ କରିବ। କେତେ କଥା କହିଲା, ଗାଳି ଗୁଲଜ କଲା। ୱାର୍ଡ କାଉନ୍‌ସିଲର୍ ଜେନା ବାବୁ ହସ୍ତକ୍ଷେପ କରିବାରୁ ଏପର୍ଯ୍ୟନ୍ତ ତାର କୁଡିଆଟି ସୁରକ୍ଷିତ ଅଛି କିନ୍ତୁ ମଝିରେ ମଝିରେ ଦୋ ମହଲା ଉପରୁ ତାର ଚାଳ ଉପରେ ବିଭିନ୍ନ ପ୍ରକାରର ଅଳିଆ ଆବର୍ଜନା ମାନ ପଡେ। ଯିଏ ଯାହା ପାରିଲା, ଝରକା ବାଟେ ଉପରୁ ତଳକୁ ଫୋପାଡିଲା, ଛିଣ୍ଡା ଚପଲ ସହିତ ମଦ ବୋତଲ ମଧ୍ୟ ବାଦ ପଡେ ନାହିଁ। ହେଲେ ସୀମା ସବୁ ସହ୍ୟ କରିନିଏ। କିଛି କୁହେ ନାହିଁ, କହି ମଧ୍ୟ ଲାଭ ଯେ ମିଳିବ ନାହିଁ । ସେ ଭଲ ଭାବରେ ଜାଣେ। ସବୁ ସହି ଯିବାଟା ତା ଜୀବନର ସର୍ବସ୍ୱ। ଗରୀବ ଲୋକର ସାହା ଭରସା ବା କିଏ।

ବିପଦ ଆପଦବେଳେ ଯେତେ ଯାହା ହେଲେ ବି ମଣିଷ ତ ନିଶ୍ଚୟ ବୁଝିବ ମଣିଷର ଦୁଃଖ। ଦୁଃଖ କିମ୍ବା ବିପଦ ଆସିଲେ ମଣିଷ ସବୁ ଭେଦଭାବ ଭୁଲି ଯାଇ ଅନ୍ୟକୁ ଉଦ୍ଧାର କରିବାରେ ଲାଗିପଡେ। ମନେ ମନେ ଭାବିଲା ସୀମା, ଶେଷରେ ସ୍ଥିର କଲା ଥରେ ଯାଇ ଚେଷ୍ଟା କରାଯାଉ, ଲୋକ ଗୁଡାକ କଥାବାର୍ତ୍ତା ହେଉଛନ୍ତି। ଘରୁ ପାଦ ବଢେଇଲା ସୀମା। ବାହାରଟା ଖୁବ ଅନ୍ଧାର, ଦକ୍ଷିଣ ପଟକୁ ମହାପାତ୍ର ବାବୁଙ୍କ ପାଚେରୀ ଗେଟ୍ ପାଖରେ ଜଳୁଛି କମଳା ରଙ୍ଗର ମ୍ୟୁନିସିପାଲଟି ଲାଇଟ୍। ଶକ୍ତ ଲୁହା ଫାଟକରେ ଲେଖାଯାଇଛି, ଦୀନବନ୍ଧୁ ମହାପାତ୍ର ଓ ତା ତଳକୁ କୁକୁରକୁ ସାବଧାନ। ସେ ଫାଟକ ପାଖରେ ଠିଆ ହୋଇ ଦେଖିଲା ଦୋ ମହଲା ଉପରେ ଦୁଇ ତିନିଜଣ ଏପଟ ସେପଟ ହେଉଛନ୍ତି। ସେମାନେ କଥାବାର୍ତ୍ତା ହେବା ତାକୁ ସ୍ପଷ୍ଟ ଶୁଣାଯାଉଛି। ଘର ଭିତରେ ଲାଇଟ୍ ଜଳୁଛି। ସାହସ ଆସିଲା ଏଥର ଛାତିରେ ତାର, ଡାକିଲେ କେହି ନା କେହି ଜଣେ ଶୁଣିବେ ନିଶ୍ଚୟ ତା ଡାକ। ଖୁବ୍ ସଂଯତ ଗଳାରେ ଡାକିଲା ଆଜ୍ଞା......ଆଜ୍ଞା ...... ଆଜ୍ଞାବାବୁ........ବାବୁ.... କିନ୍ତୁ

କେହି ଶୁଣିଲେ ନାହିଁ । ଶେଷରେ ବଡ ପାଟିରେ ଲୁହା ଗେଟ୍‌ଟାକୁ ବାଡେଇ ବାଡେଇ ଡାକିଲା ବାବୁ......ବାବୁ.... ମରିଗଲି ରକ୍ଷା କରନ୍ତୁ । ଇମିତି ଡାକି ଡାକି କଣ୍ଠ ତାର ଥରି ଉଠିଲା ଆଖି ଜକେଇ ଆସିଲା ଲୁହରେ । ହଠାତ୍ ଆଲ୍‌ସେସିଆନ୍ କୁକୁରଟା କୁଆଡ଼େ ଥିଲା ଭୋ ଭୋ କରି ଦୌଡି ଆସି ଗେଟ୍ ଆରପଟୁ ଦୁଇଗୋଡରେ ଛିଡା ହୋଇ ଇମିତି ଗୋଟେ ଆଁ କରି ସୀମାକୁ ଅନେଇଲା ସତେ ଯେମିତି ଖାଇଯିବ । ସୀମା ଆଉ ଡାକିବ କଣ କୁକୁରର ଭୟଙ୍କର ରୂପ ଦେଖି ସେ ସ୍ଥାନରୁ ପଳେଇ ଆସିଲା ଘରକୁ । ଘରକୁ ଆସି ଦେଖିଲା ଝିଅଟି ବିଳିବିଳେଉଛି, ମଝିରେ ମଝିରେ ଖାଇବି ଖାଇବି ବୋଲି କହୁଛି । ସେ ଗିନାରେ ଅଳ୍ପ ମୁଡି ସହିତ ଚିନି ମିଶାଇ ତା ପାଟିରେ ଗୁଞ୍ଜି ଦେଲା କ୍ଷଣି ଥୁ ଥୁ କରି ସବୁ ପକେଇ ଦେଲା । ସେ ଦେଖିଲା ଝିଅଟି ବେଳକୁ ବେଳ ଦୁର୍ବଳ ହୋଇଯାଉଛି । ନିଶ୍ୱାସ୍ ଜୋରରେ ବହୁଛି । ସେ ଆଉ କିଛି ଭାବି ପାରିଲା ନାହିଁ । ଭୋ କିନା କାନ୍ଦି ଉଠିଲା । ତା ଆଖିରେ ଆଲୁଅ ଓ ଅନ୍ଧାର ସବୁ ଏକାକାର ହୋଇଗଲା ।

ହଠାତ୍ ତା ସାମ୍ନାରେ ପଲିଥିନ ପ୍ୟାକେଟ୍‌ଟା ଉପରୁ ପଡିଲା । ଲୁହରେ ଜାଲୁ ଜାଲୁଆ ଆଖି ତାର ଦେଖିଲା ଚାଳଉପରେ ନଡା ନଥିବା ସ୍ଥାନରୁ ପଲିଥିନ୍‌ଟା କେତେ ବେଳୁ ପବନରେ ଉଡିଯାଇଥିଲା । ଆକାଶର ତାରାମାନେ ଜଳଜଳ ହୋଇ ତାକୁ ଉପହାସ କରୁଥିଲେ । ଦୋ ମହଲା ଉପରେ ଆଉ ଆଗଭଳି ହୋ.. ହାଲ୍ଲା, ଧଡ୍ ଧାଡ୍ ଶବ୍ଦ ହେଉନାହିଁ । ସମସ୍ତେ ଚୁପ୍ ଚାପ୍ । ବୋଧହୁଏ ସମସ୍ତେ ଶୋଇପଡିଥିବେ । ଧିରେ ଧିରେ ହାତ ବଢେଇ ପଲିଥିନ୍ ପ୍ୟାକେଟ୍‌ଟାକୁ ଖୋଲି ଦେଖିଲା ଭିତରେ ଅଧାଖିଆ ତନ୍ଦୁର, ଚିଲି ଚିକେନ୍‌ର ହାଡ, ଫମ୍ପା ହ୍ୱିସ୍କି ବୋତଲ, ଛିଣ୍ଡା କାଗଜ ସହିତ କଦଳୀ ଚୋପା, ଘୃଣା ଓ କ୍ରୋଧରେ ସେ ଜଳୁଥିଲା । ଏଥର ଝିଅଟି ଖାଇବାକୁ ପୁଣି ମାଗିଲା । ମା ହାତରେ କଣ ନୂଆ ଜିନିଷ ଦେଖି ସେ ପଚାରିଲା ମୋ ପାଇଁ କଣ ଆଣିଲୁ, ଦଉନୁ ଖାଇବି । ହଠାତ୍ ଉଠିବସି ତା ହାତରୁ ଛଡେଇ ନେଲା ପଲିଥିନ୍ ପ୍ୟାକେଟ୍‌ଟାକୁ , ସବୁତକ ଫୋପାଡି ଦେଇ କେବଳ କଦଳୀ ଚୋପା ଦୁଇଟି ହାତରେ ଧରି ଚୋବାଇବାକୁ ଲାଗିଲା । ସେ ଦେଖୁଥିଲା

ଝିଅଟି କେତେ ଆଗ୍ରହରେ ଆଖି ବୁଜି ବୁଜି କଦଳୀ ଚୋପାଟାକୁ ଗିଳି ପକାଉଥିଲା । କଦଳୀ ଚୋପା ଦୁଇଟିକୁ ଖାଇସାରି ଝିଅଟି ପାଣି ମାଗିଲା ଓ ପାଣି ପିଇସାରି ତା ଶାଢ଼ୀରେ ସବୁ ବାନ୍ତି କରି ପକେଇଲା ଓ ତା ପରେ ନିସ୍ତେଜ ହୋଇ ପଡିଲା । ହଠାତ୍ ପେଚାଟା ମହାପାତ୍ର ବାବୁଙ୍କ ଘର ପଛପଟେ ଥିବା ଆମ୍ବ ଗଛରେ ବସି ଗୋଟିଏ ବିଚିତ୍ର ରଡି କଲା । କୁକୁର ଗୁଡାକ ଭୋ.... ଭୋ ହୋଇ ଭୁକି ଉଠିଲେ । ତା ପରେ ମନକୁ ମନ ସମସ୍ତେ ଚୁପ୍ ହୋଇଗଲେ । ସେ ଦେଖିଲା ଝିଅଟିର ଦେହ ଥଣ୍ଡା ହୋଇଗଲାଣି । ଡାକିଲେ ଶୁଣୁ ନାହିଁ, ସେ ଭୋ.... କିନା କାନ୍ଦି ଉଠିଲା, ତା କାନ୍ଦ ସହିତ କେହି ତାଳ ଦେଲେ ନାହିଁ ।ସେ ଏକୁଟିଆ ସେଇ ନିର୍ଜନତା ମଝିରେ ହିଁ କାନ୍ଦୁଥିଲା । ନିଜର ଭାଗ୍ୟ, ନିଜର ଇଷ୍ଟ ଦେବତାଙ୍କୁ ଧିକ୍କାର କରୁଥିଲା ।

ତିନିଦିନ ପରେ ଯେତେବେଳେ ଅନ୍ୟ କୌଣସି ଉପାୟ ପାଇଲା ନାହିଁ, ବାଧ୍ୟ ହୋଇ ସେ ନବବାବୁଙ୍କ ଘରକୁ ଆସିଲା, ସେତେବେଳେ ସକାଳ ସାତଟା । ନବବାବୁ ବାରଣ୍ଡାରେ ଚଉକି ଉପରେ ବସି ତାଜା ଖବର ଗୁଡାକ ପଢୁଥାନ୍ତି । ସେ ଘର ଭିତରକୁ ନ ଯାଇ ଦାଣ୍ଡ ଦୁଆର କବାଟକୁ ଆଉଜି ଠିଆ ହେଲା । ଭାବିଥିଲା ତାର ଅବସ୍ଥା ଦେଖି ବୋଧହୁଏ ବାବୁ କିଛି ପଚାରିବେ କିନ୍ତୁ ଯେତେଥର ସେ ବାବୁଙ୍କୁ ଦେଖିବାକୁ ଚେଷ୍ଟା କଲା, ଖବର କାଗଜଟା ସବୁବେଳେ ତାର ପ୍ରତିରୋଧ କଲା । ସତେ ଯିମିତି ଖବର କାଗଜର ଅକ୍ଷର ଗୁଡାକ ତାକୁ ବିଦ୍ରୁପ କରୁଛନ୍ତି । କିଛି ସମୟପରେ ଘର ଭିତରକୁ ଯିବା ପାଇଁ ଉଦ୍ୟତ ହେଲା ଏବଂ ଘର ଭିତରକୁ ଯାଇ ଦେଖିଲା ଆଉଜଣେ ତା ସ୍ଥାନକୁ ଅଧିକାର କରିନେଇଛି ଓ ତା ଆଡକୁ ପଛକରି ବାସନ ଗୁଡାକ ମାଜୁଛି । ବାବୁଆଣୀ କେଉଁଠି ଥିଲେ ହଠାତ୍ ପାଟିକରି ଉଠିଲେ କଣ, ଏବେ ଦେହ ଠିକ୍ ହୋଇଗଲା, ନା... ପଇସା ସରିଗଲା, ତୁ ସବୁବେଳେ ତୋର ସୁବିଧାରେ ଅଛୁ, କେତେବେଳେ ଚିନ୍ତା କରିଛୁ, ମୋ କଥା, ଯା.... ଯା ଏଠି ତୋର କାମ କରିବା ଆଦୌ ଦରକାର ନାହିଁ । ପଇସା ସବୁ ଆଗରୁ ନେଇସାରିଛୁ, ଆଉକିଛି ତୋର ପାଇବାର ନାହିଁ । ସେ ଦୀର୍ଘ ନିଃଶ୍ୱାସ ପକେଇ ଘରୁ ବାହାରି ଗଲାବେଳେ ଦେଖିଲା ବାବୁ ସେହିଭଳି ଚଉକିରେ ବସି

ଖବର କାଗଜଟା ପଢୁଛନ୍ତି ମୁହଁ ଉପରେ ରଖି । ସାହସକରି ମଧ୍ୟ ସେ କିଛି କହି ପାରିଲା ନାହିଁ ବାବୁଙ୍କୁ । ଦେହରେ ଯନ୍ତ୍ରଣା, ପେଟରେ କ୍ଷୁଧା, ପାଦ ଆଗକୁ ଯାଉ ନଥାଏ । ତଥାପି ସେ ଖୁବ୍ କଷ୍ଟରେ ପାଦକୁ ଆଗକୁ ବଢାଇଲା । ନବବାବୁ ଘର ଭିତରକୁ ଯାଇ ପଚାରିଲେ ସୀମା କଣ ଚାଲିଗଲା ? ହଠାତ୍ ଉତ୍ତର ଆସିଲା ଦୁଇ ଦୁଇଟା ଚାକରାଣୀ ରହି ଏଠି କଣ କରିବେ, ସେ ଯାଇଛି ଭଲ ହୋଇଛି । ମହାଠକେଇଟା ବାହାନା କରିବ ଇମିତି ଯେ ଯେମିତି ସବୁ ସତ ।

ଦୀନବନ୍ଧୁ ମହାପାତ୍ର ଆଜି ଭାରି ଖୁସି । ତାଙ୍କର ମୂଲିଆ ଗୁଡାକ ସୀମାର ଭଙ୍ଗା ଚାଳରୁ ବାଉଁଶ ଗୁଡାକୁ ଓଟାରୁଥିଲେ, କାଛକୁ ଭାଙ୍ଗି ମାଟିରେ ମିଶାଉଥିଲେ । ଜଣେ କାତିଟାକୁ ହାତରେ ଧରି ଅନାବନା ଗଛ ଗୁଡାକ କାଟି ସଫା କରୁଥିଲା । ମହାପାତ୍ର ବାବୁଙ୍କର ସିଗାରେଟ୍ ଧୂଆଁ ମୋଡି ମୋଡି ହୋଇ ଉର୍ଦ୍ଧଗାମୀ ହେଉଥିଲା । ମୂଲିଆ ଗୁଡାକ କଥା ହେଉଥିଲେ- ଯେତେହେଲେ ମାଇପିଟା, ସ୍ୱାମୀ ମରିଗଲେ କଣ ଘର ସମ୍ଭାଳି ପାରିବ କଥାରେ ଅଛି ପରା ସେମାନେ ହେଲେ ଲତା ଆଉ ପୁରୁଷ ହେଲା ଗଛ । ତା ପାଟିରୁ କଥା ଛଡେଇ ନେଇ ପଦନା କହିଲା ବୁଝିଲୁ ଭଗିଆଭାଇ ମୁଁ ପରା ସେଦିନ ବସ୍‌ଷ୍ଟାଣ୍ଡରେ ଦେଖିଲି ଗୋଟିଏ ଜବର ଟୋକା ସହିତ ସୀମା ପାନ ଖାଇ ଟୋକାଟାର ହାତ ଧରି ବସ୍‌ରେ ବସି କୁଆଡେ ଯାଉଥିଲେ । ବୁଝିଲୁ ପଦନା ତାର ନଗା ଅଛି ନା ପଘା ଅଛି । ଏ ଦୁନିଆ ରେ କଣ ଭଗବାନ୍ ନାହାନ୍ତି, ସେ ପରା ସବୁ ଦେଖୁଛନ୍ତି । ଏହି ସମୟରେ ମହାପାତ୍ର ବାବୁଙ୍କର ଆଲସେସିଆନ୍ କୁକୁରଟା କୁଆଡୁ ଆସି ସେଇ ଭଙ୍ଗା ମାଟି କାଛ ଉପରେ ବୁଲି ବୁଲି ଶୁଙ୍ଘି ଶୁଙ୍ଘି ଝାଡା ବସିଲା ।

ଦିନେ ସକାଳେ ନବବାବୁ ଖବର କାଗଜ ପଢୁଥାନ୍ତି, କଳାବତୀ ଦେବୀ ପାଖକୁ ଲାଗିଆସି କହିଲେ ଆଜିବି ଚାକରାଣୀଟା ଆସିଲା ନାହିଁ । ନବବାବୁ ସବୁ ଶୁଣି ନ ଶୁଣିଲା ପରି ରହିଲେ । ଆଜକୁ ତିନିଦିନ ହେଲା, କିଛି ନକହି ପଳେଇଛି । ମୋତେ ଦୁଇଶହ ଟଙ୍କା ମାଗୁଥିଲା, ମୁଁ ତାକୁ ମାତ୍ର ଶହେଟଙ୍କା ଦେଇଥିଲି, ନମକ

ହାରାମ ଗୁଡାକ, କଳାବତୀ କହି ଚାଲିଥିଲେ। ନବବାବୁ ଅତି ଧିର ଭାବରେ କହିଲେ ସୀମା ଗଲେ କିନ୍ତୁ କହିକି ଯାଏ ନୁହେଁ, ଚୁପ୍ ରହିଲେ କଳାବତୀ ଦେବୀ। କିଛି ସମୟପରେ ସେ ଖବର କାଗଜଟା ବଢେଇ ଦେଲେ କଳାବତୀଙ୍କ ହାତକୁ। ଛୋଟ ଛୋଟ ଅକ୍ଷର ଗୁଡାକ ସେ ପଢି ପାରୁନ ଥିଲେ ବିନା ଚଷମାରେ କିନ୍ତୁ ସେ ଜାଣିବାକୁ ପାଇଲେ ସୀମାର ସବୁ ଖବର।

ଜୟପୁର ବସ୍ଷ୍ଟାଣ୍ଡ। ମେ ମାସର ଏକ ଦ୍ୱିପହର। ପ୍ରବଳ ଖରା, ବସ୍ଷ୍ଟାଣ୍ଡଟା ପ୍ରାୟ୍ ଜନଶୂନ୍ୟ। ଲସି ଦୋକାନର ରଙ୍ଗିନ ବୋତଲ ଗୁଡାକ ଖରାରେ ସିଝୁଥାନ୍ତି। ପାନ ଦୋକାନ କେବିନ ତଳେ ବୁଲା କୁକୁରଟା ଅର୍ଦ୍ଧମୁଦ୍ରିତ ଆଖିରେ ପାଟିମେଲା କରି ଧକଉଥିଲା। ଖରାରେ କାଁ ଭାଁ ଜଣେ ଅଧେ ରାସ୍ତାରେ ଯିବା ଆସିବା କରୁଥିଲେ।

ଠିକ୍ ଏତିକିବେଳେ ଭୁବନେଶ୍ୱରକୁ ଯିବା ପାଇଁ ବସ୍ଟି ଷ୍ଟାଣ୍ଡରେ ପ୍ରବେଶ କଲା। ନବବାବୁ ତରବର ହୋଇ ବସ୍କୁ ଉଠିଗଲେ ଓ ନିଜ ସିଟ୍ ଉପରେ ବସିଲେ। ଝାଳରେ ଦିହସାରା ଜୁଡୁବୁଡୁ। ରୁମାଲଟା ବାହାର କରି ମୁହଁ ପୋଛୁଥାନ୍ତି। ଏତିକିବେଳେ ଭିକାରୁଣୀଟାକୁ ଦୂରରେ ହାତ ପତେଇ ଭିକ ମାଗୁଥିବାର ଦେଖିଲେ। କ୍ରମେ କ୍ରମେ ଭିକାରୁଣୀଟା ତାଙ୍କ ବସ୍ ଆଡକୁ ମୁହେଁଇଲା। ନବବାବୁ ଦେଖିଲେ ମନେ ମନେ ଭାବିଲେ ସୀମା ନା କଣ। ଟିକିଏ ଭଲକରି ଦେଖିଲେ ହଁ ତ, ସେଇ ସୀମା, ତାଙ୍କଘରେ ଯିଏ ଚାକରାଣୀ ଭାବରେ କାମ କରୁଥିଲା। ବସ୍ ଉପରକୁ ଉଠୁଥିବା ଯାତ୍ରୀ ମାନଙ୍କୁ ସେ ହାତ ପତେଇ ମାଗୁଥିଲା, ବାବୁ ଦୁଇଦିନ ହେଲା ଖାଇନାହିଁ, ଖାଲି ହାତଟିକୁ ପାଟିକୁ ନେଇ ଖାଇବାର ଭଙ୍ଗୀ କରୁଥିଲା। ନବବାବୁ ଅନେକ ଥର ତାକୁ ପଇସା ଦେଇଛନ୍ତି, ଅତି ସଙ୍କୋଚର ସହିତ ମାଗେ, ଦରକାର ଥିଲେ, କହିବ ମୋ ଦରମାରୁ କାଟି ଦେବେ ବାବୁ। ତା ହାତରୁ ଚା କପ୍ ମଧ୍ୟ ଅନେକଥର ନେଇ ଖାଇଛନ୍ତି। ହଠାତ୍ ବସ୍ରୁ ତଳକୁ ଓହ୍ଲେଇ ପଡିଲେ ନବବାବୁ, ପକେଟରୁ ଗୋଟିଏ ପଚାଶ ଟଙ୍କିଆ ନୋଟ୍ ବାହାରକରି ମନେ ମନେ ଚିନ୍ତାକଲେ

ଏଇଟିକୁ ତାକୁ ଦେବେ, ଏତିକିରେ କଣ ତାର ଦୁଃଖ ଯିବ, ଭାବୁଭାବୁ ଶହେଟଙ୍କିଆ ନୋଟ୍‌ଟିକୁ ଦେଖାଇ କହିଲେ ନେ.... ନେ... । କିଛି ସମୟ ଅନେଇ ରହିଲା ସୀମା, ଥରେ ନୋଟ୍‌ଟାକୁ ଓ ପରେ ତାଙ୍କ ମୁହଁକୁ । ଟଙ୍କାଟାକୁ ହାତରେ ନ ଧରି ସେ ସ୍ଥାନରୁ ଅନ୍ୟ ଦିଗରେ ଧିର ଗତିରେ ଆଗେଇ ଚାଲିଲା, ଫେରି ମଧ୍ୟ ଚାହିଁଲା ନାହିଁ, ନବବାବୁ ଦେଖୁଥିଲେ ତା ପଛପଟୁ ଭୋକିଲା ପାଦର ଚାଲି ଓ ଚିରି ଯାଇଥିବା ଶାଢୀ ତଳେ ଦାରିଦ୍ର୍ୟର କଷାଘାତରେ ଜର୍ଜରିତ ହୋଇଥିବା ଏକ ଜୀବନ । ଝାଳରେ ଭିଜି ଯାଇଥିଲେ ଗୋଟା ସାରା ନବବାବୁ, ଟପ୍ ଟପ୍ ହୋଇ ଝାଳ ତାଙ୍କ ମୁହଁରୁ ଗଳି ପଡୁଥିଲା । ତାଙ୍କୁ ହଠାତ୍ ଅନ୍ଧାର ଦେଖାଗଲା, ସେ ଲଥକିନା ଭୂଇଁ ଉପରେ ବସି ପଡିଲେ । ହାଁ....ହାଁ... କହି ଲୋକମାନେ ଦୌଡି ଆସି ତାଙ୍କୁ ଟେକିନେଇ ପାଖ ଲସି ଦୋକାନ ବେଞ୍ଚ ଉପରେ ଶୁଆଇ ଦେଲେ । ମୁହଁରେ ପାଣିଛିଞ୍ଚି ସାଷ୍ଟାଙ୍ଗ କରାଇଲେ । ସେ ଧିର ସ୍ଥିର ହୋଇ ଶୋଇଥାନ୍ତି, ଆଖି ବନ୍ଦ କରି, ତାଙ୍କୁ ଟିକିଏ ଭଲ ଲାଗୁଥାଏ । ଲୋକ ଗୁଡାକ କଥାବାର୍ତ୍ତା ହେଉଥିଲେ କମ୍ ଖରା, ହଁସା ଉଡିଯିବ । ଲସି ଦୋକାନୀଟା କହିଲା, ସନ୍ ଷ୍ଟ୍ରୋକ୍‌ରେ ଏଇ ବସ୍‌ଷ୍ଟାଣ୍ଡରୁ ଗତକାଲି ଦୁଇଜଣ ଡାକ୍ତର ଖାନାକୁ ଯାଇଛନ୍ତି । ନବବାବୁ ଭାବୁଥିଲେ ବୋଧହୁଏ ସେ ସୀମାକୁ ଟଙ୍କା ଯାଚୁଥିବା ଦୃଶ୍ୟଟା କାହାରି ନଜରକୁ ଆସି ନାହିଁ । ବସ୍ ଗୁଡାକ ଘୁଁ ଘାଁ ହୋଇ ଷ୍ଟାଣ୍ଡ ଭିତରକୁ ଓ ଭିତରୁ ବାହାରକୁ ଚାଲିଯାଉଥାନ୍ତି । ଟିକିଏ ଟିକିଏ ଆଖି ମେଲାକରି ନବବାବୁ ଦେଖୁଥିଲେ କୁଆଡେ ଗଲା ସୀମା, ସୀମା କିନ୍ତୁ ସେଠି ନଥିଲା ସେତେବେଳକୁ । ଲସି ଦୋକାନୀଟା କହୁଥିଲା ଆଜ୍ଞା- ଆପଣଙ୍କ ବସ୍ ଚାଲିଗଲାଣି । ପର ବସ୍‌ରେ ଯିବେ, ଟିକିଏ ସୁସ୍ଥ ହୋଇଯାଆନ୍ତୁ । ନବବାବୁ ଚେଷ୍ଟା କରୁଥିଲେ ଆଖି ବୁଲେଇ ଆଉଥରେ ଦେଖିବାକୁ ସୀମାକୁ, କୁଆଡେ ଗଲା ସିଏ, କିନ୍ତୁ ସୀମା ସେ ସ୍ଥାନ ପରିତ୍ୟାଗ କରିଥିଲା କେତେବେଳଠୁ ।



# ଡାକ ବଙ୍ଗଳା

ବିକାଶ ଦାସଙ୍କ ଗାଡ଼ିଟା ମୋଡ଼ ନେଲା । ଡ୍ରାଇଭର ଚିମା କହିଲା, ସାର୍ ଏଇଟା ଗୋଟିଏ ଡାକ ବଙ୍ଗଳା ବୋଧହୁଏ । ଦେଖିବା କ'ଣ ସୁବିଧା ଅଛି, ସୁଟ୍ ମିଳିଗଲେ ରାତିରେ ରହିଯିବା । ମୋତେ ମଧ୍ୟ ରାତିଟାରେ ଏତେ ବାଟ ଯିବା ପାଇଁ ସାହାସ ହେଉନାହିଁ, କାରଣ ବର୍ଷାଦିନ କେତେବେଳେ କେଉଁ କଥା, ଦେଖିଲେ ତ ବାଟ ଯାକ ଗାଡ଼ି କେତେ ପାଲଟି ଯାଇଛି । ବର୍ଷା ଦିନେ ଗାଡ଼ି ଉପରେ କଣ୍ଟ୍ରୋଲ ରହେ ନାହିଁ ।

ଦରଓ୍ବାଜା ଖୋଲି ବିକାଶ ବାବୁ ବାହାରକୁ ବାହାରି ଆସିଲେ । ଡ୍ରାଇଭରକୁ ବାଧ୍ୟ କରି ଗାଡ଼ି ଚଳେଇବା ସେ ଆଦୌ ପସନ୍ଦ କରନ୍ତି ନାହିଁ । ତେଣୁ ହାତରେ ଯଥେଷ୍ଟ ସମୟ ରଖି ଘରୁ ବାହାରିଛନ୍ତି ଭୁବନେଶ୍ୱର ଅଭିମୁଖେ, ଏକ ଜରୁରୀ ବୈଠକରେ ଯୋଗ ଦେବାପାଇଁ । ଆଛା ଠିକ୍ ଅଛି ସେ କହିବା ମାତ୍ରେ, ଚିମା ବଙ୍ଗଳାରେ ଗାଡ଼ି ରଖି ରଡ଼ି କଲା ଚୌକିଦାର.. ଚୌକିଦାର.. ଚୌକିଦାର, ଅନେକଥର ଡାକିବା ପରେ ଗାଡ଼ି ପାଖକୁ ସେ ଆସି କହିଲା ସାର୍, ଚୌକିଦାରର ଦେଖା ନାହିଁ, କେଉଁଠି ପିଇକି ଶୋଇଥିବ । ବିକାଶ ବାବୁ ଚିମା କଥାକୁ ନଶୁଣି ବଙ୍ଗଳାଟିକୁ ଦେଖୁଥିଲେ । ବଙ୍ଗଳାଟି ବହୁତ ପୁରୁଣା ଏହାଯେ ବ୍ରିଟିଶ ସମୟର, ଏହାର ନିର୍ମାଣ ଶୈଳୀ ସୂଚାଇ ଦିଏ । ବଙ୍ଗଳାର ଚାରିଆଡ଼େ ଆମ୍ବ, କଦମ୍ବ, ଚମ୍ପା ଗଛ ସହିତ ଗୋଟିଏ ବିରାଟ ବରଗଛର ଅସ୍ତିତ୍ୱ ବଙ୍ଗଳାଟିକୁ ଭୂତକୋଠିରେ ପରିଣତ କରିଛି । ସାମ୍ନାରେ କେତେକ ଦେଶୀ ବିଦେଶୀ ଫୁଲ ଗଛର ମର୍ମନ୍ତୁଦ କାହାଣୀ । ଲନ୍‌ରେ ଅନାବନା ଘାସ ସହିତ ମିଶିଥିବା ଗୋଲାପ କଢ଼ିର ଆକୁଳତା । ବଙ୍ଗଳାର ଅନତି ଦୂରରେ ଥିବା ଗୋଟିଏ ପୁରୁଣା କୂଅର ଉଦାସୀନତା । ତାର ବାଡ଼ରେ ଲଟେଇ ଥିବା ଅନାବନା ଫୁଲର କରୁଣ ଚାହାଣୀ । ସନ୍ଧ୍ୟା ସମୟରେ ପକ୍ଷୀଙ୍କର

କାକଳୀ ପରିବେଶଟିକୁ ମନମୁଗ୍ଧକର କରିଥିଲା । ବିକାଶ ବାବୁ ତାଙ୍କ ଗଳ୍ପକୁ ମନେ ମନେ ପ୍ଲଟିଂ କରୁଥିଲେ ।

ଦୂରରୁ ଦେଖିଲେ ଚିମା ଗୋଟିଏ ବୁଢ଼ା ଲୋକକୁ ସଙ୍ଗରେ ଧରି ଆସୁଛି । ଲୋକଟିର ବୟସ ଅଧିକ ହେତୁ ନଇଁ ପଡ଼ିଛି, ହାତରେ ତମାଖୁର ପିକା ଦିକ୍ ଦିକ୍ ନିଆଁର ଝଲକ । ଚିମା କହିଲା, ସାର, ଏଇଟା ହେଉଚି ଚୌକିଦାର, ବଙ୍ଗଳା ଛାଡ଼ି ରାସ୍ତାକଡ଼ ଚା ଦୋକାନରେ ବସିଥିଲା । ଚଞ୍ଚଳ ରୁମ୍‌ଟେ ଖୋଲି ବେଡ଼ସିଟ ପକା, ଚିମା କହିଲା, ଲୋକଟି ଆଜ୍ଞାଧିନ ଛାତ୍ର ପରି ସବୁ କାମ କରି ପକେଇଲା । ରୁମ୍ ଭିତରେ ବସିବାକୁ କାହିଁକି ବିକାଶ ବାବୁଙ୍କୁ ଭଲ ଲାଗିଲା ନାହିଁ । ସେ ସେତେବେଳ ପର୍ଯ୍ୟନ୍ତ ବାହ୍ୟ ଦୃଶ୍ୟକୁ ଉପଭୋଗ କରୁଥିଲେ । ବାହାରକୁ ଚେୟାର ଗୋଟିଏ ଆଣିବା ପାଇଁ କହିଲେ ବିକାଶ ବାବୁ, ବୁଢ଼ାଟି ଚେୟାର ଆଣି ବାରଣ୍ଡାରେ ଥୋଇଦେଲା । ଚେୟାରରେ ବସୁ ବସୁ ବିକାଶ ବାବୁ କହିଲେ, ତୁମ ନାମ କ'ଣ ?

ସୁନ୍ଦ୍ରା ...

ସୁନ୍ଦ୍ରା, ସୁନ୍ଦ୍ରା କ'ଣ, କହିଲେ ବିକାଶ ବାବୁ

ଆଜ୍ଞା, ମୋ ନାଁ ମଦନ ସୁନ୍ଦରରାୟ, ମୋତେ ସମସ୍ତେ ସୁନ୍ଦ୍ରା, ସୁନ୍ଦ୍ରା ବୋଲି ଡାକନ୍ତି । ଆମ ଘର ଖୋର୍ଦ୍ଧା ସେପଟେ ଆଜ୍ଞା, ମୁଁ ଯେତେବେଳେ ପନ୍ଦର କି ଷୋହଳ ବର୍ଷର ହୋଇଥିଲି ସେତେବେଳେ ଶତ୍ରୁଘ୍ନ ବଳିଆର ସିଂହ, ଆମ ଖୋର୍ଦ୍ଧାପଟ ଲୋକ, ଏଠି ଏକଜିକ୍ୟୁଟିଭ୍ ଇଞ୍ଜିନିଅର ଥିଲେ, ସେ ମୋତେ ଏଠାକୁ ଆଣି ଏଠି ରଖେଇଥିଲେ ଯେ ଆଜି ଯାଏ ଅଛି । ବୟସ ହୋଇଗଲାଣି ବାବୁ, ଆଖିକୁ ବି ଭଲ ଦେଖା ଯାଉନାହିଁ, ଦି' ଦିନ ତଳେ ଏଇ ବଗିଚାର ଅନାବନା ଘାସ ଲଟା ଗୁଡ଼ାକ ସଫା କରୁଥିଲି ଯେ, ବର୍ଷାରେ ଭିଜିଗଲି ଥଣ୍ଡା ଧରି ପକେଇଚି , କହୁ କହୁ ଖୁଁ ଖୁଁ କାଶିଲା । ସେଇଥି ପାଇଁ ଚା ଦୋକାନରେ ବସି ଚା ପିଉଥିଲି, ଠିକ୍ ଏତିକି ବେଳକୁ ଆପଣଙ୍କ ଗାଡ଼ି ଆସିଲା ମୁଁ ଦୋକାନରେ ବସି ଦେଖୁଥିଲି ଆପଣଙ୍କ ଗାଡ଼ି

ବଙ୍ଗଳା ଭିତରକୁ ପ୍ରବେଶ କଲା ।

ବିକାଶ ବାବୁ ବୁଢ଼ାଟିର ନାଁ ପଚାରୁ ପଚାରୁ ବୁଢ଼ାଟି ଯେ ଏକ ନିଃଶ୍ୱାସରେ ଏତେ କଥା କହିଗଲା, ଏହା ତାଙ୍କୁ ଖୁବ୍ ଭଲ ଲାଗିଲା, କାହିଁକି କେଜାଣି ସୁନ୍ଦ୍ରା ସହିତ ସେ ଆଳାପରେ ମାତିଗଲେ ।

ସୁନ୍ଦ୍ରା, ତୁମର ବୟସ କେତେ ?

ସୁନ୍ଦ୍ରା ପୁଣି ଆରମ୍ଭ କଲା, ବାବୁ ମୁଁ ଏଠାକୁ ଯେତେବେଳେ ପ୍ରଥମେ ଆସିଲି, ଏଠାରେ କେବଳ ଏଇ ବରଗଛଟି ଥିଲା । ଏଇ ଯେଉଁ ଆମ୍ବ, କଦମ୍ବ, ଚମ୍ପା ଗଛ ସବୁ ଦେଖୁଛନ୍ତି; ସେଗୁଡ଼ିକ ମୁଁ ଲଗେଇଚି । ଏଠାକୁ ଆଗରୁ ରାସ୍ତା ନଥିଲା, ଲୋକେ ଚାଲି ଚାଲି ଆସୁଥିଲେ ବଳଦ ଗାଡ଼ିରେ ନଚେତ୍ ଘୋଡ଼ା ଗାଡ଼ିରେ, ସାଇବ ମାନେ ଏଠାକୁ କୁଆଡ଼େ ଘୋଡ଼ା ଚଢ଼ି ଆସୁଥିଲେ । ମୋ ଗୁରୁ କହୁଥିଲା, ସେ କୁଆଡ଼େ ସାଇବ ମାନଙ୍କର ବହୁତ କାମ କରିଚି । ସାଇବ ମାନେ ଖୁସି ହୋଇ ତାକୁ ବକସିସ ଦିଅନ୍ତି । ବିଲାତି ପାନୀୟ ମଧ୍ୟ ଅନେକଥର ଦେଇଛନ୍ତି, କଥାରେ ଇମିତି ବୁଡ଼ି ଯାଇଥିଲା ଯେ ସେ ତା ନିଜର ବୟସ କେତେ କହିବାକୁ ଭୁଲି ଯାଇଥିଲା।

ବିକାଶ ବାବୁ ପଚାରିଲେ, ଗୁରୁ କିଏ ?

ମୋ ଗୁରୁ, ମୁଁ ଯେତେବେଳେ ଏଠାକୁ ଆସିଲି ପିଲାଟା ଥିଲି । ସେତେବେଳେ ବୁଦ୍ଧି କେତେ ମୋର । ସିଏ ସବୁ କାଇଦା ଶିଖେଇଛନ୍ତି । ସିଏ ଏବେ ସ୍ୱର୍ଗରେ ଅଛନ୍ତି, ତାଙ୍କ ନାଁ ଦେବଚକ୍ର । କଲାବାଲା ଯିମିତି ନେଲାବାଲା ସିମିତି ସମସ୍ତଙ୍କ ମନକୁ ଜାଣି କାମ କରିବା ଲୋକ ସିଏ , ନହେଲେ ସାଇବ ମାନେ ତାକୁ ଏତେ ପସନ୍ଦ କରନ୍ତେ କିମିତି ।

ଗୁରୁ କହୁଥିଲା ଥରେ ସାଇବ, ସାଇବାଣୀ ଘୋଡ଼ା ଗାଡ଼ିରେ ଚଢ଼ି ଏଠାକୁ ଆସିଥିଲେ । ସାଙ୍ଗରେ ବୋଝେ ଜିନିଷ , ସାଇବଙ୍କ ହାତରେ ଦୋନଲା

ବନ୍ଧୁକ, ସାଇବ ଭାରି ଶିକାରୀ ପ୍ରିୟ ଥିଲେ। ସାଇବାଣୀକୁ ଏଇ ବଙ୍ଗଳା ଯେଉଁଠି ଆପଣ ରହୁଛନ୍ତି ସେଠି ଛାଡ଼ି ଜଙ୍ଗଲକୁ ଶିକାର ପାଇଁ ଗଲେ। ସାଇବାଣୀ ଏକୁଟିଆ ରୁମ୍‌ରେ ବସିଥିଲେ। ହଠାତ୍ ହାଉଳି ଖାଇ ରୁମ୍ ଭିତରୁ ପଦାକୁ ବାହାରି ଆସି ମୋ ଗୁରୁ ଜାବୁଡ଼ି ଧରିଲେ, ସ୍ନେକ୍ ସ୍ନେକ୍ ରଡ଼ି କରୁଥିଲେ। ମୋ ଗୁରୁ ସେଇ ବିଷଧର ସାପଟିକୁ ମାରି ଦେଇ ଥିବାରୁ କେତେ କ'ଣ ପୁରସ୍କାର ସହିତ ସାର୍ଟିଫିକେଟ ମଧ୍ୟ ପାଇଥିଲେ ସାଇବଙ୍କ ଠୁଁ।

ରାତିକ୍ରମେ ଘନେଇ ଆସୁଥିଲା। ସୁନ୍ଦ୍ରାର କଥା ରୋମାଞ୍ଚ ସୃଷ୍ଟି କରୁଥିଲା ବିକାଶ ବାବୁଙ୍କ ମନରେ । ସୁନ୍ଦ୍ରା ହଠାତ୍ ବରଗଛ ଆଡ଼େ ହାତ ଦେଖେଇ କହିଲା ଏଇ ବରଗଛରେ ଗୋଟିଏ ପେତୁଣୀ ଅଛି। ପେତୁଣୀ ନାଁ ଶୁଣି ବିକାଶ ବାବୁଙ୍କ ମନରେ ଭୟ ସଂଚାର ହେଲା। କାରଣ ପିଲାଦିନେ ସେ ଜେଜେମା' ଠାରୁ ଅନେକ ଭୂତ, ପ୍ରେତ, ରାଜା ରାଣୀଙ୍କ କାହାଣୀ ଶୁଣିଛନ୍ତି। କିନ୍ତୁ ଭୂତ, ପ୍ରେତ ଦେଖି ନାହାନ୍ତି। ସେ ହଠାତ୍ ସେଇ ବରଗଛଟିକୁ ଚାହିଁ ଦେବା ମାତ୍ରେ ସତେ ଯେମିତି ତାଙ୍କୁ ସେଠାରେ ଗୋଟିଏ ପେତୁଣୀ ଦେଖାଗଲା। ସେ ଚୁପ୍ ଚାପ୍ ସୁନ୍ଦ୍ରା କଥାକୁ ଏକ ଲୟରେ ଶୁଣୁଥିଲେ। ଭୂତକୁ ନଦେଖିଲେ ନାହିଁ ଭୂତ ଶବ୍ଦ ହିଁ ମନରେ ଭୟ ସଞ୍ଚାର କରେ।

ପେତୁଣୀ କଣ ତୁମର କିଛି ଅନିଷ୍ଟ କରୁନାହିଁ ? ନାଇଁ ଆଜ୍ଞା ସିଏ ତାର ଦୁଃଖରେ ଅଛି; କାହିଁ କି ମୋର ଅନିଷ୍ଟ କରିବ। ମଧ୍ୟ ରାତ୍ରିରେ, କିମ୍ବା ଅମାବାସ୍ୟା ରାତ୍ରିରେ ଦିନେ ଦିନେ କାନ୍ଦିବାର ଶବ୍ଦ ଶୁଣାଯାଏ , ଆଉ ତା ସହିତ ସାମ୍ନା ସାମ୍ନି ଭେଟ ହେଲେ ବେକ ମୋଡ଼ି ଦେବ ସିଏ। ଆମେ ସବୁ ଅଭ୍ୟସ୍ତ ହୋଇଗଲୁଣି ତା' ସହିତ ସିଏ ଜାଣିଚି ଆମକୁ । ପେତୁଣୀ ଏଠାକୁ କିମିତି ଆସିଲା ପ୍ରଶ୍ନ କଲେ ବିକାଶ ବାବୁ। ସେ ଅତି ରହସ୍ୟମୟ କଥା ଆଜ୍ଞା, କହିଲେ ରାତି ପାହିଯିବ, କହି ଚାଲିଥାଏ ସୁନ୍ଦ୍ରା ବିକାଶ ବାବୁ ମଝିରେ ମଝିରେ ହୁଁ ମାରୁଥାନ୍ତି।

ଭାରତ ସ୍ୱାଧୀନ ହୋଇନଥାଏ । ମୁଁ ଏଠାକୁ ଆସି ନଥିଲି । ମୋ ଗୁରୁ ତାଙ୍କ ପିଲାମାନଙ୍କୁ ନେଇ ସେଇ ଚୌକିଦାର କ୍ୱାଟରରେ ରହୁଥିଲେ । ହାତ ବଢ଼େଇ ଦେଖାଇଦେଲା । ଆପଣ ଦେଖୁଛନ୍ତି ଆଜ୍ଞା, ସେଇ ଭଙ୍ଗା କାଛକୁ, ମୁଁ ଯେଉଁ ଦୋକାନରେ ବସି ଚା' ପିଉଥିଲି ତାରି ପଛପଟ ଟିକିଏ ଦୂରରେ । ଆଗରୁ ସେଠି ବିଦା ସାହୁର ଘର ଥିଲା । ସେତେବେଳ ସମୟରେ ତାର ଏଠାରେ ପ୍ରଥମ ଚା' ଦୋକାନ । ଦିନେ ଦିନେ ବାବୁ ମାନେ ଆସି ରାତିରେ ଏଇ ବଙ୍ଗଳାରେ ରହିଲେ ସିଏ ଆସି ରୋଷେଇ କରିଦିଏ । କେବେ କିମିତି ଘରୁ ମଧ୍ୟ ରୋଷେଇ କରି ଆଣି ବାବୁ ମାନଙ୍କୁ ଦେଇଥାଏ । ରୋଷେଇ କରିବାରେ ଭାରି ଧୁରନ୍ଧର ଥିଲା ସିଏ । ଟୁରା ମାଝୀ ତା'ଘରେ ହଳିଆ ଥିଲା । ତାର ଝିଅ ସପନୀ ମାଝୀ । ବୟସ ପନ୍ଦର କି ଷୋହଳ । ବାପ ବିଲ ବାଡ଼ି କାମ ଦେଖୁଥିବା ବେଳେ ଝିଅଟି ସାହୁ ଦୋକାନରେ ନବା ଦବା ଠାରୁ ଆରମ୍ଭ କରି ବାସନ କୁସନ ମାଜି ଦେଉଥିଲା । ଏଇମିତି ଚାଲିଥିଲା ସେମାନଙ୍କର ସଂସାର ।

ସେଇଟା ବୋଧହୁଏ ଗୋଟିଏ ଅମାବାସ୍ୟା ରାତି ହବ ପରା । କିଟ୍ କିଟ୍ ଅନ୍ଧାରକୁ ବର୍ଷା, ମାନେ ପ୍ରବଳ ବର୍ଷା । ରାତି ଆଠଟା ବେଳକୁ ମୋ ଗୁରୁ ଆସି ଗଦା ସାହୁକୁ ଘରୁ ଡାକିନେଇ ବାବୁ ମାନଙ୍କ ପାଇଁ ରୋଷେଇ କରିବାକୁ କହିଲା । ବଙ୍ଗଳାର ଅନ୍ୟାନ୍ୟ ଜିନିଷପତ୍ର ସବୁ ବାହାର କରିଦେଇ ମୋ ଗୁରୁ ଆସି ଘରେ ଶୋଇଗଲା । ତାଙ୍କ କହିବା ଅନୁଯାୟୀ ସିଏ କୁଆଡ଼େ ରାତି ଅଧ ବେଳକୁ ଶୁଣିଥିଲେ । ବଙ୍ଗଳା ଭିତରେ ଧସ୍ତାଧସ୍ତି, ଧଡ୍, ଧାଡ୍ ଶବ୍ଦ, ଚୁଡ଼ି ଶବ୍ଦ ଓ ଗଁ ଗଁ ଶବ୍ଦ । ଭୋର ସକାଳକୁ ସେ ଦେଖନ୍ତି ତ ସପନୀ ମାଝୀର ଶବ ସେଇ ନଇଁ ପଡ଼ିଥିବା ବରଗଛ ଡାଳରେ ଓହଳିଛି, ବାବୁମାନଙ୍କର ପତ୍ତା ନାହିଁ । କିଏ ସେଇ ବାବୁ ମାନେ କେହି କହିପାରିଲେ ନାହିଁ ।

ତା'ପରେ ଦେଖନ୍ତୁ, ନାଲି ପଗଡ଼ିଆଙ୍କର ଉତ୍ପାତ ଆରମ୍ଭ ହୋଇଗଲା । ସାହୁକୁ ଧରିନେଲେ ସେମାନେ । ତାକୁ ଜିଅଲ ହୋଇଗଲା । ଅନେକ

ଦିନ ପର୍ଯ୍ୟନ୍ତ କେଶ୍ ଚାଲିଲା । ସେଇ କେଶରେ ସାହୁର ପରିବାର ଉଚ୍ଛନ୍ନ ହୋଇ ଭିଟାମାଟି ଛାଡ଼ିଦେଲେ । ମୋ ଗୁରୁ କହୁଥିଲା । ସାଇବଙ୍କର ସାର୍ଟିଫିକେଟ ବଳରେ ସେ ପୁଲିସି କବଳରୁ ମୁକୁଳି ଥିଲା । ସେଇବାବୁ ମାନେ ସପନୀକୁ କୁଆଡ଼େ ରେପ୍ କରି ମର୍ଡର କରି ଥିଲେ, ବିଚରା ସାହୁ ଫସିଗଲା, ତାକୁ ତା ଗୁରୁ କହିଥିଲା ଚୁପ୍ ସାବଧାନ, ପୁଲିସି କି ବିଶ୍ୱାସ ନାହିଁ । ତୁ' ଟା ଯେତେହେଲେ ପିଲା । ହାଇ ମାରିଲା ସୁନ୍ଦ୍ରା ତା'ର କଥା ସରୁ ସରୁ । ମୋର ସବୁ ମନେ ଅଛି ସାହେବ । ସିଏ କେତେବେଳୁ ଚାଲିଗଲାଣି ତା' ଘରକୁ । ଚାରିଆଡେ ଅନ୍ଧକାର । ବରଗଛଟା ଯେମିତି ଏକ ବିରାଟ ବ୍ରହ୍ମ ରାକ୍ଷସର ଆକୃତି ଧାରଣ କରିଛି । ଟେବୁଲ ଉପରେ ଲଣ୍ଠନଟି ମିଞ୍ଜି ମିଞ୍ଜି ଜଳୁଛି । ପ୍ଲେଟ୍‌ରେ ଥୁଆ ହୋଇଚି କିଛି ଖାଦ୍ୟ ।

ବିକାଶ ବାବୁ କାହିଁକି ଚିନ୍ତାଶୀଳ ହୋଇ ଉଠିଛନ୍ତି । ମନେ ମନେ ଭାବୁଛନ୍ତି ସେଇ ବାବୁ ମାନେ କିଏ । ନିଦ୍ୱର୍ନ୍ଦରେ ଆଇନ ଆଖିକୁ ଧୂଳି ଦେଇ ଖସିଗଲେ, ପୁଣି ବ୍ରିଟିଶ ଶାସନ କାଳରେ । ନିଷ୍ଚୟ ସେମାନଙ୍କର ସାମାଜିକ ସ୍ଥିତି ଥିବ ଏବଂ ସମ୍ଭ୍ରାନ୍ତ ପରିବାରର ହୋଇଥିବେ ନଚେତ୍ ପେଶାଦାର ଖୁନୀ ଆସାମୀ ନିଜକୁ ଭଦ୍ର ଲୋକର ପରିଚୟ ଦେଇଥିବ କେବଳ ଏକ ନିରିହ ଜୀବନକୁ ନଷ୍ଟ କରିବା ପାଇଁ । ସିଗାରେଟ୍‌ରେ ଅଗ୍ନି ସଂଯୋଗ କଲେ ବିକାଶ ବାବୁ । ସିଏ ଶୁଣି ପାରୁଥିଲେ ସୁନ୍ଦ୍ରା କହୁ ଥିବା ମୃତ ବ୍ୟକ୍ତି ମାନଙ୍କର ଜୀବନ୍ତ କାହାଣୀ । ଝର୍କା ଫାଙ୍କ ଦେଇ ଚାହିଁଲେ ପୂର୍ବାକାଶ ଆଡ଼କୁ । ସିଗାରେଟ୍‌ର ଅଗ୍ନିଭଳି ପୂର୍ବାକାଶ ଲାଲ ହୋଇ ଉଠୁଥିଲା । ସମସ୍ତେ ଶୋଇଥିଲେ । ପକ୍ଷୀମାନଙ୍କର ନିଦ ଭାଙ୍ଗି ଯାଇଥିଲା । ପ୍ରତ୍ୟୁଷର ଝଲକାଏ ପବନ ବରଗଛଟିକୁ ଦୋହଲାଉ ଥିଲା । ବରଗଛର ସେଇ ନଇଁ ପଡିଥିବା ଡାଳଟି ଏବେ ଯେମିତି ସବୁ ରାଜସାକ୍ଷୀ ଦେବାପାଇଁ ଚୁପ୍ ଚାପ୍ ଠିଆ ହୋଇଛି । ପଦଚାରଣ କରୁଥିଲେ ବିକାଶ ବାବୁ । ପଛପଟୁ ଝିମା ପ୍ରଣିପାତ କରି କହିଲା ସାର୍ , ଯିବା ।

ସକାଳୁଆ କାମ ସବୁ ସାରି ବିକାଶ ବାବୁ ଗାଡ଼ିରେ ବସିଲେ ।

ପୁଣି ଥରେ ଆଖି ବୁଲେଇ ଆଣିଲେ ସେଇ ନଇଁ ପଡ଼ିଥିବା ବରଗଛ ଡାଳ ଉପରେ । ଏବେ ଖୁବ୍ ସ୍ପଷ୍ଟ ଦେଖାଯାଉଥିଲା ଗଛର ମୂଳ ଓ ଡାଳ । ପକ୍ଷୀ ଗୁଡ଼ାକ କିଚିରି ମିଚିରି ଶବ୍ଦ କରି ଡେଉଁଥିଲେ ଡାଳକୁ ଡାଳ, ସବୁ କିମ୍ବଦନ୍ତୀ ସତ ନୁହେଁ, କିନ୍ତୁ ପ୍ରହେଳିକାର ଏକ ମଲାଟମାତ୍ର । ଗାଡ଼ି ଛୁଟିଥାଏ ଭୁବନେଶ୍ୱର ଅଭିମୁଖେ । ସୁନ୍ଦ୍ରା କିନ୍ତୁ ତାଙ୍କ ମନ ଭିତରେ କହି ଚାଲିଥାଏ ପୂର୍ବ ଭଳି ସେଇ ନିରୀହ ଝିଅଟିର କଥା । ଡାକ ବଙ୍ଗଳାର ବର ଗଛଟି ତାଙ୍କ ମାନସ ଚକ୍ଷୁରେ ଦିଶିଯାଉଥିଲା । ଗାଡ଼ି ଦ୍ରୁତ ବେଗରେ ମାଡ଼ି ଚାଲିଥିଲା ଆଗକୁ ।



# ଦି ଟାଇଗର

ଆଶ୍ଚର୍ଯ୍ୟ, କେହି ସ୍ୱପ୍ନରେ ସୁଦ୍ଧା ଭାବି ପାରିବେ ନାହିଁ, ବାଘ, ପୁଣି ଘର ଭିତରେ। ଏତେ ବଡ଼ ସହର ଭିତରେ, ପୁଣି ଘର ଭିତରେ ବାଘ ଆଦୌ ବିଶ୍ୱାସ ହେଉନାହିଁ। ପଡୋଶୀ ମାନେ ରୁଷ୍ଟ ହୋଇ କଥାଟାକୁ ଖୁବ୍ ଗୋଟିଏ ଗମ୍ଭୀରତାର ସହ ବିଚାର କରୁଥିଲେ। କିମିତି ଏଇଟା ଆସିଲା, କୁଆଡୁ ଆସିଲା। କେହି କେହି କହୁଥିଲେ ଇଟ୍ ଇଜ୍ ଇମ୍ପସିବୁଲ। ପୁଣି କେତେ ଜଣ କହୁଥିଲେ ହ୍ୱାଇ ନଟ୍ ପସିବୁଲ। ଘଟଣାଟା କଣ ହେଲା ଜାଣିବା ପାଇଁ ସେ ସ୍ଥାନରେ ଯିଏ ପହଞ୍ଚିଲା ପଚାରୁଥାଏ ଘର ମାଲିକାଣୀକୁ। ଘର ମାଲିକାଣୀ ଡଃ ଜ୍ୟୋତିର୍ମୟୀ ଦାସ କହୁଥିଲେ, ରାତି ଠିକ୍ ୧୧.୩୦ ମିନିଟ୍ ଦିଲ୍ଲୀ ଦୂରଦର୍ଶନ କେନ୍ଦ୍ରରୁ ଇଂରାଜୀର ଶେଷ ସମ୍ବାଦ ଶୁଣି ମୁଁ ବାହାର ପଟ ଗେଟ୍‌କୁ ତାଲା ପକେଇବାକୁ ଆସି ହଠାତ୍ ଦେଖିଲି, ଦି ଟାଇଗର, ମୁଁ ବାକ୍ ଶୂନ୍ୟ ହୋଇଗଲି। ଦି ଟାଇଗର କମ୍ପଣ୍ଡ ଓଭର ଦି ଫେନ୍ସ ଏଣ୍ଡ ୱେଣ୍ଟ ଆଉଟ୍ ଅଫ୍ ମାଇଁ ସାଇଟ୍। ଯେତେବେଳେ ମୋର ହୋସ ଆସିଲା ମୁଁ ରଡି କଲି ଟାଇଗର.. ଟାଇଗର ଓ ଆପଣମାନେ ତାର କିଛି ସମୟ ପରେ ଏଠାକୁ ଆସି ପହଞ୍ଚିଲେ। ପ୍ରାୟ ସେଠାରେ ଯେତେଜଣ ଉପସ୍ଥିତ ଥିଲେ ସମସ୍ତେ ବାଘ ବିଷୟରେ ଗୋଟିଏ ସବିଶେଷ ବିବରଣୀ ପାଇବା ପାଇଁ ଚେଷ୍ଟିତ ଥିଲେ। ମାନେ, ବାଘଟି କେଉଁ ଜାତିର, କେତେ ବଡ଼ ନିଶ ଗୁଡ଼ାକ ଦେଖିବାକୁ କିମିତି, ଲାଞ୍ଜ କେତେ, ଲମ୍ବା କିମିତି ଡେଇଁଲା। ବାଘଟିକୁ ହଠାତ୍ ଦେଖିବା ବେଳେ ବାଘଟି କେଉଁ ଅବସ୍ଥାରେ ଥିଲା, ଆଁ କରି ନିଶ ଗୁଡ଼ାକ ହଲଉଥିଲା କି ନାହିଁ। କ୍ଳାନ୍ତ ଓ ବିବ୍ରତ ହୋଇ ଡଃ ଦାସ ସମସ୍ତଙ୍କୁ ଗୁଡ୍ ନାଇଟ୍ କହି ଭଲକରି କବାଟ କିଳି ଶୋଇବାକୁ ଗଲେ। ଘର ଭିତର ଓ ବାହାର ଚାରିଆଡ଼େ ଆଲୁଅ ଜାଳିଦେଲେ। ଆଲୁଅରେ ମଧ୍ୟ ବାଘର ଛବି ତାଙ୍କୁ ଦୃଶ୍ୟ ହେଉଥିଲା। ତାପର ଦିନ ଘଟଣାଟି

ବିଜୁଳି ବେଗରେ ସହରରେ ପ୍ରଚାର ହୋଇଗଲା ।

ରାତି ନ ପାହୁଣୁ ଡଃ ଦାସଙ୍କ ଘର ସାମ୍ନାରେ ପ୍ରବଳ ଭିଡ଼ । ପାଟି ଶବ୍ଦରେ ତାଙ୍କ ନିଦ ଭାଙ୍ଗିଗଲା । ବାହାରକୁ ଆସି ଦେଖନ୍ତି ରାସ୍ତା ଲୋକାରଣ୍ୟ , ପୋଲିସ ବାଲା , ମିଡ଼ିଆ ବାଲା , କ୍ୟାମେରା ବାଲା , ଭିଡ଼ିଓ କ୍ୟାମେରା ବାଲା , ଜଙ୍ଗଲ ବିଭାଗର କର୍ମଚାରୀ ଓ ଦେଖଣାହାରୀଙ୍କର ଭିଡ଼ । ଡଃ ଦାସଙ୍କୁ ସେମାନେ ପଚାରୁଛନ୍ତି ଅନେକ ପ୍ରଶ୍ନ । ଶେଷରେ ପ୍ରେସବାଲା କହି ଉଠିଲେ - ୱାନ ବାଇ ୱାନ । କ୍ୟୁ ଲାଗିଲା , ଫଟୋ ଉଠିଲା । ଡଃ ଦାସ ଛିଡ଼ା ହୋଇଥାନ୍ତି । ଓଃ ୟେସ୍ , ଆଇ ସେ ଆଇ ହାଭ୍ ସିନ୍ ଦି ଟାଇଗର । ପ୍ରେସବାଲା ପୋଲିସ ବାଲାଙ୍କ ଉଦ୍ଦେଶ୍ୟରେ କହିଲେ ପ୍ଲିଜ୍ , ଆମକୁ ପ୍ରଥମେ ଛାଡ଼ି ଦିଅନ୍ତୁ ତା'ପରେ ଆପଣ ଯାହା କରିବେ ।

ପ୍ରେସବାଲା - ମ୍ୟାଡାମ୍ ଆପଣ କ'ଣ ଏକୁଟିଆ ଘରେ ରହୁଛନ୍ତି ।
ଡଃ ଦାସ - ନାଁ ସାଙ୍ଗରେ ମୋର ୧୦ ବର୍ଷର ପୁଅ ଅଛି ।
ମି. ଦାସ କଣ ନାହାନ୍ତି ?
ନା , ମିଃ ଦାସ୍ ଦିଲ୍ଲୀରେ , ସେଠି ଏମ୍‌ସରେ ପି.ଜି. କରୁଛନ୍ତି ।
ଟିକିଏ ହେଲପ୍ କରନ୍ତୁ ମ୍ୟାଡାମ୍ , ଆସନ୍ତୁ ଫଟୋ ନେବୁ । ବାଘଟା ଠିକ୍ କେଉଁଠି ଶୋଇଥିଲା , ସେଇଠି ଛିଡ଼ା ହୁଅନ୍ତୁ । ବାଘଟା କେଉଁ ଜାତିର ଥିଲା ।
ସେଇଟା ଗୋଟିଏ ଚିତା ବାଘ । ବଡ଼ ଚିତା ବାଘ , ଦେହ ଯାକ ବ୍ଲାକ୍ ସ୍ପଟ୍ ।
ପ୍ରେସ୍ ବାଲାଃ- ଓକେ ଥ୍ୟାଙ୍କ ୟୁ ମ୍ୟାଡାମ୍ ।
ଆଜ୍ଞା ଆମେ ଚାଲିଲୁ ଆମର କାମ ସରିଲା । ସଂଗେ ସଂଗେ ପୋଲିସ ବାଲା ଆସି ଡଃ ଦାସଙ୍କ ସାମନାରେ ହାଜର ହେଲେ ଓ ନୋଟ ବହି ବାହାର କରି ଲେଖିବା ଆରମ୍ଭ କଲେ ।
ଏଇ ଘର , ମାନେ ସରକାରୀ କ୍ବାଟରରେ ଆପଣ କେତେ ବର୍ଷ ହେଲା ରହୁଛନ୍ତି ?

ଛଅ ବର୍ଷ ହେଲା ।

ଏହା ପୂର୍ବରୁ କେଉଁଠି ଥିଲେ ?

ଏହା ପୂର୍ବରୁ ଆମେ ବୁର୍ଲାରେ ଥିଲୁ । ଏଥିରେ ବାଘ ସହିତ ସମ୍ପର୍କ କ'ଣ ?

ନାଇଁ ନାଇଁ ମ୍ୟାଡାମ୍ ସେମିତି ପଚାରିଲୁ । ମିଷ୍ଟର ଦାସ କେତେ ଦିନ ହେଲା ଦିଲ୍ଲୀ ଗଲେଣି ।

ଏଇ ତିନି ମାସ ହେବ ।

ଘରେ ତାହେଲେ ଆପଣ ଓ ଆପଣଙ୍କ ପୁଅ ବ୍ୟତୀତ ଆଉ କଣ କେହି ମେଲ୍ କିମ୍ବା ଫିମେଲ ମେମ୍ବର ନାହାନ୍ତି ?

ନାଁ

ଆଚ୍ଛା, କୁହନ୍ତୁ ବାଘଟିକୁ ଆପଣ ଯେତେବେଳେ ଦେଖିଲେ ବାଘଟି କେଉଁ ଅବସ୍ଥାରେ ଥିଲା ।

ବାଘଟି ଠିକ୍ କେଉଁ ଅବସ୍ଥାରେ ଥିଲା ମୁଁ କହି ପାରିବି ନାହିଁ । ହେଲେ ବାଘଟି ମୋତେ ଦେଖିବାମାତ୍ରେ ଜମ୍ପ ମାରି ପଳେଇଗଲା ।

ସମୟ କେତେ ହେବ ?

ରାତି ପ୍ରାୟ ୧୧.୪୫ ମିନିଟ୍ ହେବ।

ବାଘଟା ଆପଣଙ୍କୁ କେମିତି ମାଲୁମ ହେଲା ।

ମାନେ ?

ମାନେ ସେଇଟା ପୋଷା ବାଘ, ନା ସର୍କସ ବାଲାଙ୍କର ବାଘ, ନା ଜଙ୍ଗଲର ବାଘ ।

ମୁଁ ଜାଣିବି କେମିତି ?

ବାଘ ଠାରେ କିଛି ବ୍ୟତିକ୍ରମ ଦେଖିଥିଲେ ?

ନା, ସିମିତି କିଛି ଦେଖିଲି ନାହିଁ ।

ଶିଘ୍ର ସାରନ୍ତୁ, ଆଇ ହେଭ୍ ନୋ ଟାଇମ୍ ।

ମ୍ୟାଡାମ୍, ମ୍ୟାଡାମ୍, ଆଉ ଟିକିଏ ସମୟ ଦିଅନ୍ତୁ , ଆମେ ଆପଣଙ୍କର ବେଶି ସମୟ ନେବୁ ନାହିଁ ।

ବାଘଟା କିଛି କ୍ଷତି କରି ନାହିଁତ ?

କହିଲି ପରା, କିଛି କ୍ଷତି କରି ନାହିଁ । ମୋତେ ଦେଖିବା ମାତ୍ରେ ଡେଇଁ ପଳାଇଗଲା । ଏଇଟା ବୋଧହୁଏ ଚିଡ଼ିଆ ଖାନା ନଚେତ୍ ସର୍କସ ବାଘ ହେବ, କେମିତି ଖସି ଆସିଛି ।

ଏହି ଘଟଣା ପରେ ସରକାରୀ ଦପ୍ତରରେ ଅନେକ ମିଟିଂ ଇତ୍ୟାଦି ହୋଇସାରିଛି । ଇତିମଧ୍ୟରେ ବାଘ ଗଣନା ମଧ୍ୟ ଶେଷ ହୋଇ ସାରିଛି । ବାଘ ସଂଖ୍ୟା ୧୦୦ ସଠିକ୍ ଖବର ଦିଆଯାଇ ଫାଇଲକୁ ବାନ୍ଧି ମଧ୍ୟ ଯଥା ସ୍ଥାନରେ ଥୋଇ ଦିଆହୋଇଛି । କିନ୍ତୁ ଏଇ ବାଘ ସମ୍ପର୍କୀୟ ଆଲୋଚନା ସହରରେ କି ପିଲା କି ବୁଢ଼ା ସମସ୍ତଙ୍କ ମୁହଁରେ ସରକାରୀ ଦପ୍ତର, ବସ୍ ଷ୍ଟାଣ୍ଡ, ମାର୍କେଟ, ପାନ ଦୋକାନ, ଚା ଭାଟିରେ କିଛି ଦିନ ପାଇଁ ଖୁବ୍ ଚର୍ଚ୍ଚାର ବିଷୟ ହେଲା । ଏଇ ଘଟଣାଟି ପରେ ପରେ କେତେକ ଚାକିରିଆ ନିଜ ନିଜ ଘର ବାରି ପଛରେ ଲଟେଇ ଥିବା ଅନାବନା ଗଛ ସବୁକୁ କତୁରୀରେ ସଫା କରିବାର ଦେଖାଗଲା । କେତେକ ଘରର ଆଗପଟ ଓ ପଛ ପଟରେ ବିଜୁଳିଆଲୁଅ ପୁନର୍ବାର ଜଳେଇବାର ବନ୍ଦବସ୍ତରେ ଲାଗିଥିଲେ । କେହି କେହି ଥଟ୍ଟାରେ ବା ମଜାରେ କହୁଥିଲେ ବାଘମାନେ ଏବେ ସହରରେ ବୁଲୁଛନ୍ତି ନିର୍ଭୟରେ । ମୁଁ ମଧ୍ୟ ରାତିରେ ସେଇ ରାସ୍ତାକଡ଼ ଗଛ ମୂଳେ ବାଘ ହାଇ ମାରୁଥିବାର ଦେଖିଥିଲି । ଯେମିତି ପାଟିକରି ଅନ୍ୟମାନଙ୍କୁ ଡାକିଲି ଏକା ଡିଆଁକେ ବାଘ ଛୁ... ।

କିଛିଦିନ ପର୍ଯ୍ୟନ୍ତ ବାଘ ବିଷୟରେ ଆଲୋଚନା ସହରଟାକୁ ସରଗରମ କରି ରଖିଥିଲା । କ୍ରମେ କ୍ରମେ ସମସ୍ତେ ଏଇ ଘଟଣାଟିକୁ ଭୁଲିଯାଇଥିଲେ କିନ୍ତୁ କେତେଜଣ ଶିକାରୀ ଏଇ ଘଟଣାଟିକୁ ଆଦୌ ଭୁଲି ନଥିଲେ । ସେମାନେ ମନରେ ଧରି ନେଇଥିଲେ ଯେ ବାଘଟା ପୁରାପୁରି ଗୋଟିଏ ମଣିଷ ଖିଆ ବାଘ । ମଣିଷ ଖିଆ

ହୋଇନଥିଲେ ବାଘଟା ସହର ଭିତରେ ପଶି ଆସିନଥାନ୍ତା । ବାଘଟିକୁ ଶିକାର କରିବା ପାଇଁ ମନେ ମନେ ସ୍ଥିର କରି ସାରିଥିଲେ ସେମାନେ ।

ବ୍ରଜ ସୁନ୍ଦର ରାଏ ଓ ଗୋପୀନାଥ ସିଂ ଦୁହେଁ ପୋଖତ ଶିକାରୀ । ବ୍ରଜ ସୁନ୍ଦର ରାଏ ଜମିଦାର ଘରର ପିଲା । ବାପା ଓ ଜେଜେବାପାଙ୍କ ଅମଳରୁ ବୁନିଆଦି ଅଛି । ଘରେ ଅନେକ ପୁରୁଣା ଜିନିଷ ମଧ୍ୟରୁ ବ୍ରିଟିଶ ସରକାରଙ୍କ ଅମଳରୁ ଦୁଇଟି ଦୁଇନଳା ବନ୍ଧୁକ ଡବ୍ଲୁ ଡବ୍ଲୁ ଗ୍ରିନାର ଓ ନେସଫିଲଡ ତାଙ୍କର ଭାରି ପ୍ରିୟ । ହଠାତ୍ ଦିନେ ସେ ଗୋପୀନାଥକୁ କହିଲେ, ଗୋପୀ, ଚାଲ ଆଜି ଏଇ ଜଙ୍ଗଲକୁ ଶିକାର କରି ଯିବା, ମାନେ ବାଘ ଶିକାର, ଦେଖିବା ସେଇ ମଣିଷ ଖିଆ ବାଘର ଅସଲ ସ୍ୱରୂପ । ଦୁହେଁ ଅକସ୍ମାତ ବାହାରି ପଡ଼ିଲେ ସେଇ ଜଙ୍ଗଲ ଅଭିମୁଖେ । ଦିନ ସାରା ବୁଲି ବୁଲି ଶିକାର କରିବା ସ୍ଥାନ ନିରୂପଣ କରି ଏକ ଝରଣା କୂଳରେ ଗୋଟିଏ ବଡ଼ ଆମ୍ବଗଛ ଉପରେ ମଞ୍ଚ ତିଆରି କରି ବସିଲେ । ଚାରିଆଡ଼େ ପାହାଡ଼, ସ୍ଥାନଟା ଘଞ୍ଚ ଜଙ୍ଗଲରେ ପରିପୂର୍ଣ୍ଣ । ସନ୍ଧ୍ୟା ପରେ କ୍ରମେ ଅନ୍ଧକାର ଘନେଇ ଆସିଲା । ଜଙ୍ଗଲ ଝରଣାର କୁଳୁକୁଳୁ ଶବ୍ଦ କେବଳ ରାତ୍ରିର ନିସ୍ତବ୍ଧତାକୁ ଭଙ୍ଗ କରୁଥାଏ । ରାତି ବଢ଼ି ବଢ଼ି ଚାଲିଥାଏ, ଖରାଦିନ, ମଝିରେ ମଝିରେ ପବନ ବହୁଥାଏ । ବାଘ ଝରଣା କୂଳକୁ ପାଣି ପିଇବା ପାଇଁ ନିଶ୍ଚିତ ଭାବେ ଆସିବ, ସତର୍କତାର ସହିତ ଟର୍ଚ୍ଚ ଲାଇଟ ଓ ବନ୍ଧୁକ ଧରି ଦୁଇବନ୍ଧୁ ଝରଣା ଆଡ଼କୁ ଅନେଇଥାନ୍ତି । ହଠାତ୍ ସେମାନଙ୍କ ପଛପଟୁ ଖସ୍ ଖସ୍ ଶବ୍ଦ ହେଲା । ଗୋପୀ ବ୍ରଜସୁନ୍ଦରଙ୍କ କାନମୂଳରେ ଫୁସ୍ ଫୁସ୍ କରି କହିଲା, ଭାଇନା ବାଘ ଆସିଗଲା । ଚୁପ୍, କଥା କହନା, କହିଲେ ବ୍ରଜସୁନ୍ଦର, ଥିର କରି ବସ୍ । ହାତରେ ଦୋ' ନଳା ବନ୍ଧୁକକୁ ଧରି ଏକ ଧ୍ୟାନରେ ବସିଥାନ୍ତି । କିଛି ସମୟ ପରେ ପୁଣି ଖସ୍ ଖସ୍ ଶବ୍ଦ ହେଲା ଏବଂ ତା'ପରେ ପଚା ଗନ୍ଧ ଆସିଲା, ଗୋପୀ ଏଥରକ ଆଉ ସମ୍ଭାଳି ପାରିଲା ନାହିଁ, କହିଲା ଭାଇନା ବାଘଟା ପରା ଆମ ପଛ ପଟେ ବସିଚି, ଆମେ ତୁଚ୍ଛା ମିଛଟାରେ ଆଗକୁ ଅନେଇଚୁ, କେତେବେଳେ ଡେଇଁବ

ଯେ ଶେଷରେ ଦୁହିଁଙ୍କ ମଧ୍ୟରୁ ଜଣେ ବଳି ପଡ଼ିବ । ହେଃ ଚୁପ୍‌କର, ତୁଟା ଗୋଟିଏ ତୁଛା ଡରୁଆଟାଏ , ବାଘ ଶିକାର କରି ଆସିଛି । ତୋ ଦ୍ୱାରା ଶିକାର ହେବ ନାହିଁ । ବାଘ ଏତେ ବୋକା ନୁହେଁ , ସେଇଟା ଖସ୍ ଖସ୍ ଶବ୍ଦ କରି ଆସିବ । ବାଘ ଜଙ୍ଗଲର ରଜା । ବାଘଶିକାର କରିବା ଲୋକର ବାଘ ଭଳିଆ ଦିଲ୍ ଥିବା ଦରକାର । ତୋ ଭଳିଆ ଡରକୁଳା, ଟିକିଏ ଖସ୍ କଲେ, ଟିକିଏ ଗନ୍ଧ ହେଲେ ପୁରା ନର୍ଭସ ହୋଇଯାଉଚୁ । ଆଉ ପ୍ରକୃତରେ ବାଘ ସହିତ ସାମ୍ନା ସାମ୍ନି ହେଲେ ତୋର ଅବସ୍ଥା କ'ଣ ନ ହେବ । ସେଦିନ ରାତି ବିତେଇ ଦୁହେଁ ଘରକୁ ଫେରିଥିଲେ ।

କିଛି ଦିନ ପରେ ବ୍ରଜ ସୁନ୍ଦର ରାୟ ଭାବିଲେ ଗୋପୀଟାକୁ ସାଙ୍ଗରେ ନେଲେ ବାଘ ଶିକାର କରିହେବ ନାହିଁ । ତେଣୁ ସେ ଏକୁଟିଆ ବଣକୁ ଯିବା ପାଇଁ ସ୍ଥିର କଲେ । ଦିନ ପାଇଁ ଥାଉଁ ଜଲଦି ସେଇ ଆମ୍ବ ଗଛ ଉପରେ ଆଗରୁ ବନ୍ଧା ଯାଇଥିବା ମଞ୍ଚା ଉପରେ ବସି ସବୁ ସରଞ୍ଜାମ ପ୍ରସ୍ତୁତ କରି ରଖିଲେ । କ୍ରମେ କ୍ରମେ ସୂର୍ଯ୍ୟ ଅସ୍ତାଚଳ ଗାମୀ ହେଲେ । ଆଖିକୁ ଜଙ୍ଗଲର ପ୍ରତ୍ୟେକ ଜିନିଷ ଅସ୍ପଷ୍ଟରୁ ଅସ୍ପଷ୍ଟତର ହେଲା । କେବଳ ଅନ୍ଧକାର ମଧ୍ୟରେ ସବୁ ହଜିଗଲା । ଦିନବେଳେ ଜଙ୍ଗଲ ଯେତେ ସୁନ୍ଦର, ରାତିରେ ସେତିକି ଭୟଙ୍କର । ତଥାପି ଧୈର୍ଯ୍ୟ ଓ ସାହସର ସହିତ ସେ ବସିଥାନ୍ତି ଟର୍ଚ୍ଚଲାଇଟ ଓ ବନ୍ଧୁକ ଧରି । ମଝିରେ ମଝିରେ ଜଙ୍ଗଲ ମଶା କାମୁଡ଼ି ତାଙ୍କୁ ବ୍ୟତିବ୍ୟସ୍ତ କରି ପକଉ ଥାନ୍ତି । ମୟୂରଟା ପାଖ ପାହାଡ଼ ଉପରୁ କେଁ.. କାଁ ରଡ଼ି କରୁଥାଏ । ଜଙ୍ଗଲର ଝିଣ୍ଟିକା ଗୁଡ଼ିକ ବିଚିତ୍ର ଶବ୍ଦ ସୃଷ୍ଟି କରୁଥାନ୍ତି । ହାତ ଘଣ୍ଟାକୁ ଚାହିଁଲେ ବ୍ରଜସୁନ୍ଦର ସମୟ ଏଗାରଟା ପନ୍ଦର । କାହିଁ ବାଘର ତ ଦେଖା ଦର୍ଶନ ନାହିଁ । କ୍ରମେ କ୍ରମେ ପବନ ବହିବାକୁ ଆରମ୍ଭ କଲା । କାହୁଁ ଥିଲା ମେଘ, ପ୍ରଚଣ୍ଡ ପବନ ସହିତ ସମଗ୍ର ଇଲାକାଟାକୁ କବଳିତ କରି ଆରମ୍ଭ କଲା ପ୍ରବଳ ବୃଷ୍ଟି । ପବନରେ ପୂର୍ବରୁ ବନ୍ଧା ଯାଇଥିବା ମଞ୍ଚାର ଦଉଡ଼ି ଛିଡ଼ି ଯିବା ଫଳରେ ନିଜର ଭାରସାମ୍ୟ ହରାଇ ବସିଲେ ବ୍ରଜସୁନ୍ଦର ବାବୁ ତାଙ୍କ ହାତରୁ ବନ୍ଧୁକ ଓ ଟର୍ଚ୍ଚ ଲାଇଟ୍ ଗଳି ପଡ଼ିଲା ତଳକୁ । ସେ କିଛି ସମୟ ଗଛ ଡାଳ ଧରି ଝୁଲି ରହିଲେ ହେଲେ

କେତେ ସମୟ ପର୍ଯ୍ୟନ୍ତ, ଶେଷରେ ଦୁଲ୍‌କିନା ତଳେ ପଡ଼ିଗଲେ, ଭାଗ୍ୟ ଭଲ ତଳେ ପଥର ନଥିଲା, ଥିଲା କେବଳ ଶୁଖିଲା ପତ୍ରଗଦା ନଚେତ୍ ସେଇଠି ନିଜେ ଶେଷ ହୋଇଯାଇଥାନ୍ତେ । ଅଜଣା ଭୟ, ଆଶଙ୍କା, ଓ ଉପରୁ ତଳକୁ ପଡ଼ିଯାଇଥିବା ଜନିତ ଯନ୍ତ୍ରଣାରେ ଅତିଷ୍ଠ ହୋଇ ଉଠିଲେ ବ୍ରଜସୁନ୍ଦର ବାବୁ । କିଟି କିଟି ଅନ୍ଧାର ରାତିରେ ମଣିଷ ଯେ କେତେ ଅସହାୟ ନିଜେ ଅଙ୍ଗେ ନ ନିଭେଇଲେ ସହଜରେ ଜାଣି ହୁଏ ନାହିଁ । ପୁଣି ଜଂଗଲ ଜାଗା । ଅନ୍ଧାରରେ ଅଣ୍ଡାଳିଲେ ନିଜର ଟର୍ଚ୍ଚ ଓ ବନ୍ଧୁକ । ମିଳିଗଲା ଦୁଇଟି ଯାକ ଜିନିଷ । ହେଲେ ଟର୍ଚ୍ଚର କାଚ ଭାଙ୍ଗି ଯାଇଥିଲା । ବନ୍ଧୁକଟି ଥିଲା ସୁରକ୍ଷିତ । ନିଜର ଗାମୁଛା ବାହାର କରି ବନ୍ଧୁକର ନଳୀ ଓ କ୍ୟାଟ୍ରିଜ୍ ସବୁ ପୋଛି ସଫା କରି ପୁନର୍ବାର ପ୍ରସ୍ତୁତ କରି ରଖିଲେ । ଏବେ ବିପଦ ଆସନ୍ନ, ଜୀବନ ମରଣ ସମସ୍ୟା । କାରଣ ବାଘର ଯଦି ଆଗମନ ହୁଏ ତାହେଲେ ତାକୁ ଶିକାର କରିବେ ନଚେତ୍ ସେ ବାଘର ଶିକାର ହୋଇଯିବେ । ଏଇଟା ଗୋଟିଏ ମଣିଷ ଖିଆ ବାଘ ବୋଲି ମନେ ମନେ ଭାବୁଥାନ୍ତି ବ୍ରଜସୁନ୍ଦର ରାୟ । ମୃତ୍ୟୁ ଯେ ହାତ ପାହାନ୍ତାରେ ଏହା ସେ ନିଶ୍ଚିତ ଭାବରେ ଜାଣି ପାରିଥିଲେ । ତଥାପି ସାହସର ସହିତ ଅପେକ୍ଷା କରିଥାନ୍ତି ବାଘର ଆଗମନକୁ । ଅନେକ ସମୟ ପର୍ଯ୍ୟନ୍ତ ଗଛ ଆଡ଼କୁ ପିଠି କରି ହାତରେ ବନ୍ଧୁକ ଧରି ପ୍ରସ୍ତୁତ ହୋଇ ବସି ରହିଲେ । ଝଡ଼ ଓ ବର୍ଷା ପରେ ଜଙ୍ଗଲଟି ଯିମିତି ଖୁବ୍ ଶାନ୍ତ ହୋଇଯାଇଛି । ଚାରିଆଡ଼େ ନିସ୍ତବ୍ଧ । ଝରଣାର କୁଳୁକୁଳୁ ଶବ୍ଦ ତାଙ୍କୁ ସ୍ପଷ୍ଟ ଶୁଣାଯାଉଥାଏ । ରାତି ପ୍ରାୟ ଦୁଇ ଘଟିକା ହେବ ।

କିଛି ସମୟ ବିତିଗଲା ପରେ ତାଙ୍କୁ ଯିମିତି ଶୁଣାଗଲା ପାଦ ଶବ୍ଦ । ଖୁବ୍ ସତର୍କତାର ସହ ଶବ୍ଦ ଶୁଣା ଯାଉଥିବା ଦିଗକୁ କାନ ଡେରିଲେ । କ୍ରମେ କ୍ରମେ ପାଦଶବ୍ଦ ସ୍ପଷ୍ଟ ଶୁଣାଗଲା । ତାହେଲେ ଏ ପାଦଶବ୍ଦ କାହାର ହାତୀ ନା ମଣିଷର । ତା'ପରେ ପରେ ପାଦ ଶବ୍ଦ ସେଇ ଝରଣା କୂଳ ଆଡ଼କୁ ଅଗ୍ରସର ହେଲା. ଓ କିଛି ସମୟ ପାଇଁ ନିସ୍ତବ୍ଧ ହୋଇଗଲା । ଭୟ ଓ ଆଶଙ୍କାରେ ଥରି ଉଠିଲେ ବ୍ରଜବାବୁ । ବିଚିତ୍ର ଶବ୍ଦ ଭୂତ, ପ୍ରେତଙ୍କ ଉପରେ ବିଶ୍ୱାସ ନଥିଲେ ମଧ୍ୟ ଏକ ଦୁର୍ବଳ ମୁହୂର୍ତ୍ତରେ

ସବୁ କିଛିକୁ ବିଶ୍ୱାସ କରାଯାଇପାରେ ।

ହଠାତ୍ ଟର୍ଚ୍ଚ ଲାଇଟ୍ ଜଳି ଉଠିଲା । ଦୂରରୁ ଫିସ୍ ଫିସ୍ କଥା ବାର୍ତ୍ତା ହେବା ଶବ୍ଦ ଶୁଣାଗଲା । ଏଥର ସେ ଜାଣିଲେ ସେମାନେ ମଣିଷ । ତେବେ ଏତେ ରାତିରେ ଏ ଜଙ୍ଗଲରେ କଣ କରୁଛନ୍ତି , ନିଶ୍ଚିତ ଭାବେ ଡକେଇତ ହୋଇଥିବେ । ସେ ଆସ୍ତେ ଆସ୍ତେ ସେମାନଙ୍କ କଥା ଶୁଣିବାକୁ ଅନ୍ଧାରରେ ସେମାନଙ୍କର ନିକଟତର ହେଲେ । ହାତରେ ତାଙ୍କର ଦୋନଳା ବନ୍ଧୁକ । ସେମାନଙ୍କର ଟର୍ଚ୍ଚ ଆଲୁଅରେ ଯାହା କିଛି ଅଳ୍ପ ଅଳ୍ପ ଦେଖା ଯାଉଥାଏ । ସେ ଠଉରେଇ ନେଲେ ପ୍ରାୟ ପାଞ୍ଚ ଛଅ ଜଣଲୋକ ନିଶ୍ଚିତ କିଛି ଅପରାଧ ଘଟେଇଛନ୍ତି । ସେ ଶୁଣିପାରିଲେ ଜଣେ କହୁଛି ଫୋପାଡ଼ିଦେବା , ଅନ୍ୟ ଜଣେ କହୁଛି ନା , ନା - ପୋତିଦେବା । ଶେଷରେ ସେମାନେ ସିଦ୍ଧାନ୍ତ ନେଲେ ପୋତିଦେବେ । ମାଟି ଖୋଳା ଆରମ୍ଭ ହେଲା । ଏଥର ସେ ଘଟଣା କଣ ସବୁ ଜାଣି ପାରିଲେ । ସେମାନେ ନିଶ୍ଚିତ ଭାବେ ଖୁନ୍ କରି ଶବକୁ ପୋତିବାକୁ ଯାଉଛନ୍ତି ଏହା ସ୍ପଷ୍ଟ ଭାବରେ ସେ ଜାଣିପାରିଲେ । ତାହେଲେ ଶବଟି କାହାର । ସେ ଟ୍ରିଗର ଉପରେ ହାତ ରଖି ଉପଯୁକ୍ତ ସମୟକୁ ଅପେକ୍ଷା କରି ରହିଲେ । ମାଟି ଖୋଳା କାମ ସରିଲା । ଶବଟିକୁ ପୋତିବାକୁ ଉଦ୍ୟତ ହେଲେ ସେମାନେ । ହଠାତ୍ ଶବ୍ଦ ହେଲା ଠୋ .... । ସବୁ ଜିନିଷ ଫୋପାଡ଼ି ଦେଇ କିଏ କୁଆଡ଼େ ଛିନ୍ ଛତ୍ର ହୋଇ ଦଉଡ଼ିବାକୁ ଲାଗିଲେ ସେମାନେ । ତାପରେ ସେ ଆସ୍ତେ ଆସ୍ତେ ଉକ୍ତ ସ୍ଥାନରେ ପହଞ୍ଚିଲେ । ସେତେବେଳକୁ ଆକାଶରେ ଚନ୍ଦ୍ରମା ଅଳ୍ପ ଅଳ୍ପ ଦେଖା ଯାଉଥାନ୍ତି । କୃଷ୍ଣ ପକ୍ଷ ରାତି । ସେମାନେ ଛାଡ଼ି ଯାଇଥିବା ଟର୍ଚ୍ଚ ଲାଇଟ ଦ୍ୱାରା ସେ ଯାହା ଦେଖିଲେ ଭୟରେ ତାଙ୍କର ଲୋମ ଟାଙ୍କୁରି ଉଠିଲା ।

ଏକ ବସ୍ତ୍ର ହୀନ ଯୁବତୀର ଶବ , ଏହା ଏକ ରେପ୍ ଓ ମର୍ଡର କେଶ । ଶବଟିକୁ ଛୁଇଁବେ କି ନାହିଁ , ଦୋ ଦୋ ପାଞ୍ଚ ହୋଇ କାଳେ ବଞ୍ଚିଥିବ ଭାବି ଝରଣାରୁ ପାଣି ଆଣି ତା ମୁହଁରେ ଛିଞ୍ଚିଲେ ତା ମୁହଁଟାକୁ ନିରେଖି ଚାହିଁଲେ । କିଛି

ସମୟ ପରେ ଯୁବତୀଟିର ଓଠ ଥରିବାକୁ ଲାଗିଲା । ଏଥର ସେ ଜାଣିଲେ ଯେ ଯୁବତୀଟି ମରିନାହିଁ ବଞ୍ଚିଛି । ତେଣୁ ତା ମୁହଁକୁ ଆଉ ଟିକିଏ ପାଣି ଛିଞ୍ଚିବା ଦ୍ୱାରା ସେ ଆଖି ଅଳ୍ପ ଖୋଲିଲା ଓ କିଛି କହିବାକୁ ଚେଷ୍ଟା କଲା ମାତ୍ର କିଛି କହି ନପାରି ମୂର୍ଚ୍ଛା ଗଲା । ତା ପରଦିନ ଖବର କାଗଜରୁ ସମସ୍ତେ ଏ ଘଟଣା ଜାଣିଲେ । ପୋଲିସ ବାଲା ଗିରଫ କଲା ଏଥିରେ ସମ୍ପୃକ୍ତ ଥିବା ଲୋକମାନଙ୍କୁ । ଜଣଙ୍କ ଘରୁ ଚିତା ବାଘର ମୁଣ୍ଡ ସହିତ ଲାଞ୍ଜଥିବା ଚମଡ଼ା ଜବତ ହେଲା । ପୋଲିସ କହିବା ଅନୁଯାୟୀ ଏହି ବାଘ ଚମଡ଼ାକୁ ବ୍ୟବହାର କରି ଚୋରି, ଡକେଇତି କରିବା ଏମାନଙ୍କର ଏକ ସୁଚିନ୍ତିତ ଯୋଜନା । କିଛି ମାସ ତଳେ ଏଇ ବାଘ ଚମଡ଼ା ଦ୍ୱାରା ଡଃ ଜ୍ୟୋତିର୍ମୟୀ ଦାସଙ୍କ ଘରେ ଡକେଇତି ଉଦ୍ୟମ କରି ବ୍ୟର୍ଥ ହୋଇଥିଲେ ଏଇ ଅପରାଧୀମାନେ କିନ୍ତୁ ଶେଷରେ ସେମାନେ ଅବଶ୍ୟ ଧରାପଡ଼ିଗଲେ । ଧନ୍ୟବାଦ ବ୍ରଜସୁନ୍ଦର ବାବୁ ଅପରାଧି ମାନେ ଧରାପଡ଼ିବା ସଂଗେ ସଂଗେ ଜଣେ ଯୁବତୀ ମଧ୍ୟ ବଂଚିଗଲା । ମଣିଷଖିଆ ବାଘ ଅପେକ୍ଷା ମଣିଷ ବାଘ ହିଁ ସବୁଠାରୁ ଭୟଙ୍କର ।



# ଶୂନ୍ୟ ବଡଦାଣ୍ଡ

ପୁରୀ ବଡଦାଣ୍ଡ କୋଳାହଳମୟ । ଯାତ୍ରୀ ମାନଙ୍କର ଭିଡ, ଦଳ ଦଳ ହୋଇ ଯାତ୍ରୀ ମାନେ ଶ୍ରୀ ମନ୍ଦିର ଆଡକୁ ଯାଉଛନ୍ତି , ପୁଣି ଦଳ ଦଳ ଯାତ୍ରୀ ମନ୍ଦିର ପଟୁ ଫେରୁଛନ୍ତି । ଧାଡି ଧାଡି ହୋଇ ଗାଡିମଟର ରାସ୍ତା କଡରେ ଛିଡା ହୋଇଛି । ଭିଡ ନିୟନ୍ତ୍ରଣ କରିବା ପାଇଁ ଟ୍ରାଫିକ ପୋଲିସ ରାସ୍ତା ଉପରେ କର୍ତ୍ତବ୍ୟରତ ଅଛନ୍ତି । ଲଣ୍ଡା ହୋଇଥିବା ଦକ୍ଷିଣା ଯାତ୍ରୀମାନେ ହାତ ଧରାଧରି ହୋଇ ରାସ୍ତା ଉପରେ ଲମ୍ବା ଲାଇନ ଲଗାଇଛନ୍ତି । ସମସ୍ତଙ୍କ ମନରେ ଗୋଟିଏ ଭାବର ଉଦ୍ରେକ ହୋଇଛି, ସେମାନେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରିବେ । ଚର୍ମ ନେତ୍ରକୁ ପବିତ୍ର କରିବେ ।

କାର୍ତ୍ତିକ ମାସ , ଧର୍ମ ଅର୍ଜନ କରିବା ମାସ । ଶିକ୍ଷିତ ହେଉ ବା ଅଶିକ୍ଷିତ ହେଉ ସମସ୍ତେ ଧର୍ମ ଭୀରୁ ଅଟନ୍ତି । ଧର୍ମକୁ ଛାଡିଦେଲେ ମଣିଷର ଜୀବନ ଏ ସଂସାରରେ ତୁଚ୍ଛ । ସେଇଥି ପାଇଁ ବଡଦାଣ୍ଡ ଆଜି ଯାତ୍ରୀମାନଙ୍କ ପାଇଁ କୋଳାହଳମୟ ହୋଇଛି । ମନ୍ଦିର ପଟୁ ଫେରି ଆସୁଥିବା ଯାତ୍ରୀମାନଙ୍କ ଅପେକ୍ଷା ମନ୍ଦିର ଆଡୁକୁ ଯାଉଥିବା ଯାତ୍ରୀମାନଙ୍କ ସଂଖ୍ୟା ଅଧିକ । ପଣ୍ଡାମାନେ ଯାତ୍ରୀମାନଙ୍କର ପିଛା ଜମା ଛାଡୁନାହାନ୍ତି । ସିଂହଦ୍ୱାର ଅରୁଣସ୍ତମ୍ଭ ନିକଟରେ ଯାତ୍ରୀମାନଙ୍କର ପ୍ରବଳ ଭିଡ । ଅନେକ ଯାତ୍ରୀ ଅରୁଣସ୍ତମ୍ଭ ତଳେ ଦୀପ ଜାଳି ମୁଣ୍ଡିଆ ମାରୁଛନ୍ତି । ସେମାନଙ୍କ ମଧ୍ୟରୁ ମହିଳା ଯାତ୍ରୀମାନଙ୍କ ସଂଖ୍ୟା ଅଧିକ । କଳା ଷଣ୍ଢଟିଏ ସେଇ ଅରୁଣସ୍ତମ୍ଭ ନିକଟରେ ଅଠିଆ ପଡିଛି । କିଏ ବା ବୁଝିବ କାହା ମନ କଥା । ପଶୁ ହେଲେ ବି ତାର ଗୋଟିଏ ଭାଷା ଅଛି, ଭାବ ଅଛି, ପଶୁର ଭାଷା କେହି ନ ବୁଝିଲେ କେହି ଜଣେ ତ ତାର ଭାବକୁ ବୁଝି ପାରିବ । ମନୁଷ୍ୟ ଯଦି ଏଇ ଭାବକୁ ବୁଝିନପାରିଲା କାଳିଆ ତ ନିଶ୍ଚୟ ବୁଝିବ । ସେଇଥିପାଇଁ ତ ତା ପାଖରେ ଏତେ ଭିଡ । ଭାଷା

ନଥିଲେ ମଣିଷ ବଞ୍ଚିପାରିବ କିନ୍ତୁ ଅନ୍ତରରେ ଯଦି ଭାବ ନଥାଏ ତାହାଲେ ମନୁଷ୍ୟ ପକ୍ଷରେ ବଞ୍ଚିବାଟା ଏକାନ୍ତ କଷ୍ଟ ସାଧ୍ୟ । ସେଇଥିବାପାଇଁ ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ସେଇ କାଳିଆ ପାଖରେ କାନ୍ଦି କାନ୍ଦି ହୃଦୟର ଭାବକୁ ପ୍ରକାଶ କରିଥାନ୍ତି, କାଳିଆ ସେଇ ଭାବକୁ ହିଁ ଗ୍ରହଣ କରିଥାଏ, ତେଣୁ ସିଏ ଭାବଗ୍ରାହୀ ।

ଶୁଭକାନ୍ତ ଅରୁଣସ୍ତମ୍ଭ ଅତିକ୍ରମ କରି ସିଂହଦ୍ୱାର ପାଖରେ ପହଞ୍ଚି ଯାଇ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇଲେ । ତା ପରେ ଧିରେ ଧିରେ ମନ୍ଦିର ଭିତରକୁ ପ୍ରବେଶ କରିବା ପାଇଁ ଆଗକୁ ପାଦ ବଢାଇଲେ । ବାଇଶି ପାହାଚର ପ୍ରଥମ ସୋପାନରେ ଭକ୍ତିରେ ପୁଣି ଏକ ମୁଣ୍ଡିଆ ମାରି କିଛି ପାହଚ ଅତିକ୍ରମ କରିବା ପରେ, ଠିକ୍ ବାଇଶି ପାହାଚର ମଝାମଝି ସ୍ଥାନରେ ସେ ବସି ପଡିଲେ, ଟିକିଏ ଥକ୍କା ମାରିବା ପାଇଁ । ଏହି ବାଇଶି ପାହାଚକୁ ଅତିକ୍ରମ କରି ପୂର୍ବରୁ ସେ କେତେଥର ଯେ ଜଗନ୍ନାଥ ମହାପ୍ରଭୂଙ୍କୁ ଦର୍ଶନ କରିଛନ୍ତି ତାର ହିସାବ ନାହିଁ, କିନ୍ତୁ ଏହା ପୂର୍ବରୁ କୌଣସି ଦିନ ଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରିବାକୁ ଆସି ବାଇଶି ପାହାଚର ମଧ୍ୟସ୍ଥଳରେ ସେ ବସି ନାହାନ୍ତି । ଆଜି କିନ୍ତୁ ସେ ଆଉ ଆଗେଇ ପାରିଲେ ନାହିଁ । ସେଇଠି ବସିବାକୁ ବାଧ୍ୟକଲା ତାଙ୍କର ବୟସ । ହଁ, ମଣିଷର ବୟସ ମଣିଷକୁ ଅତ୍ୟନ୍ତ ଦୟନୀୟ ଓ ଅସହାୟ ଅବସ୍ଥାରେ ପକାଇଥାଏ । ତାଙ୍କୁ ଯେ ୬୫ ବର୍ଷ ହେଲାଣି ସେ ବସି ପଡିବା ପରେ ତାଙ୍କର ମନେ ପଡିଲା । କୁଆଡେ ଗଲା ସେଇ ଯୌବନ, ସେଇ ଉଦ୍ଦାମତା, ଚପଳତା ଦେଖୁ ଦେଖୁ ସବୁ କିଛି ହାତରୁ ଖସି ଗଲା, ସେ ଅସହାୟ ଭାବରେ ନିଜ ଶରୀରର ବାର୍ଦ୍ଧକ୍ୟ ଅବସ୍ଥାକୁ ନିରୀକ୍ଷଣ କରୁଥିଲେ । ମନେ ମନେ ଭୁବୁଥିଲେ ଏ କ୍ଷୀଣ ଶରୀରରେ ଆଉ କେତେ ଦିନ ପ୍ରାଣ ରହିବ । ଉଠିବାକୁ ଇଚ୍ଛା ଥିଲେ ମଧ୍ୟ ଗୋଡ ଅଧିକ ବିଶ୍ରାମ ନେବାକୁ ଚାହୁଁଥିଲା, ଆଖି ଚାହୁଁଥିଲା ଚଞ୍ଚଳ ଚଞ୍ଚଳ ଦର୍ଶନ ସାରି ଫେରିଯିବାକୁ ନିଜ ଘରକୁ । ଦେହ ଓ ମନ କେହି କାହା କଥା ମାନୁନାହାନ୍ତି, କାହା ସହିତ କାହାରି ତାଳ ମେଳ ରହୁନାହିଁ । ସେଇ ବାଇଶି ପାହାଚ ଉପରେ ବସି ବସି ସେ ଭାବୁଛନ୍ତି ଅନେକ

ଥା, ଆଖି ଆଗରେ ଦେଖୁଛନ୍ତି ଭକ୍ତ ମାନେ ବାଇଶି ପାହାଚ ଅତିକ୍ରମ କରି ମନ୍ଦିର ଆଡକୁ ଯାଉଛନ୍ତି ଓ ଦର୍ଶନ ସାରି ଭକ୍ତ ମାନେ ମନ୍ଦିର ପଟୁ ଫେରିଆସୁଛନ୍ତି । ସେ କେବଳ ବସି ବସି ଭକ୍ତ ମାନଙ୍କର ଯିବା ଆସିବା ଦୃଶ୍ୟକୁ ଉପଲବ୍ଧି କରୁଛନ୍ତି । ଠାତ୍ ସେ ବସିଥିବା ସ୍ଥାନରୁ ଅଳ୍ପଦୂରରେ ଜଣେ ବୃଦ୍ଧା ଗୋଡଛନ୍ଦି ହୋଇଯିବାରୁ ାଙ୍କ ଆଗରେ ପଡିଯାଉଥିଲେ ଏବଂ ସିଏ ତାଙ୍କୁ ଧରିନେଇ ଥିଲେ , ସିଏ ଯଦି ୃଦ୍ଧା ଜଣଙ୍କୁ ସେଇଠି ଧରି ନ ଥାନ୍ତେ ତାହେଲେ ସେ ସେଇଠି କଚାଡି ହୋଇ ଡିଥାନ୍ତେ ଏବଂ ତାଙ୍କର ମୃତ୍ୟୁ ସୁନିଶ୍ଚିତ ହୋଇଥାନ୍ତା । ସମସ୍ତେ ହାଁ ହାଁ କହି ଦଉଡି ଆସିଲେ । ଶୁଭକାନ୍ତ ବୃଦ୍ଧା ଜଣଙ୍କୁ ପଡି ଯାଉଥିବା ସମୟରେ ଧରି ପକାଇଥିବାରୁ ମସ୍ତେ ଏକ ସ୍ୱରରେ କହି ଉଠିଲେ ଜଗନ୍ନାଥ ମହାପ୍ରଭୁ ତୁମକୁ ଆଜି ମୃତ୍ୟୁ ମୁଖରୁ ଞ୍ଚାଇଦେଲେ । ବୃଦ୍ଧାଜଣକ ସେଇଠି ବସି ପଡି ଶୁଭକାନ୍ତଙ୍କ ମୁହଁକୁ ଚାହିଁ ରହିଥାନ୍ତି । ସେ ବୁଝି ପାରୁନଥାନ୍ତି ଆଖି ପିଛୁଳାକେ କଣ ସବୁ ହୋଇଗଲା । ଅନ୍ୟ ଯାତ୍ରୀମାନେ ସେ ସ୍ଥାନରୁ କେତେବେଳୁ ଚାଲିଗଲେଣି, କିନ୍ତୁ ସେଇ ଦୁଇଜଣ ସେଇଠି ବସିଛନ୍ତି, କେବଳ ପରସ୍ପର ମୁହଁକୁ ଚାହୁଁଛନ୍ତି, କେହି କିଛି ହେଲେ କଥା କହୁନାହାନ୍ତି । ଶୁଭକାନ୍ତ ିରୀକ୍ଷଣ କରୁଛନ୍ତି ବୃଦ୍ଧାଙ୍କ ମୁଖ ମଣ୍ଡଳ, ତାଙ୍କର ମନେ ହେଉଛି ଯିମିତି ଅନେକ ିନର ଚିହ୍ନା ଓ ପୁରୁଣା ମୁହଁ । ବୟସ ଏବେ ତାକୁ ଚିହ୍ନେଇବାକୁ ଦେଉନାହିଁ । ୃଦ୍ଧାଙ୍କର ସଧବା ବେଶ, ମୁଣ୍ଡରେ ପକ୍ୱ କେଶ, ଶ୍ଲଥ ଚର୍ମ ଓ ନଇଁ ପଡିଥିବା ଅଣ୍ଟା, ନେଇ ରହିଛନ୍ତି ଶୁଭକାନ୍ତ ତାଙ୍କୁ ଏକ ଦୃଷ୍ଟିରେ, ଶେଷରେ ପଚାରିଲେ କୁଆଡେ ିବେ ଆପଣ ? ସାଙ୍ଗରେ କିଏ ଅଛନ୍ତି ? ବୃଦ୍ଧା ଜଣକ କହିଲେ, ଏ ଦୁନିଆରେ ମୁଁ କୁଟିଆ ମାତ୍ର, ସାଙ୍ଗରେ ମୋର କେହି ନାହାନ୍ତି । ଶୁଭକାନ୍ତ ପୁଣି ପଚାରିଲେ ହୁଛନ୍ତି କେଉଁଠି ? ବୃଦ୍ଧା ଜଣକ କହିଲେ ବାସନ୍ତି କୁଟୀର (ଓଲଡ୍ ଏଜ୍ ହୋମ) । ଦି କିଛି ମନରେ ନ ଭାବିବେ ମୁଁ ଆପଣଙ୍କର ନାମ ମୁଁ ଜାଣିପାରିବି କି ? ବୃଦ୍ଧା ଣକ କହିଲେ, ମୋର ନାମ ସ୍ୱର୍ଣ୍ଣପ୍ରଭା । ସ୍ୱର୍ଣ୍ଣପ୍ରଭା ! ଚମକି ଉଠିଲେ ଶୁଭକାନ୍ତ, ୁଣି ପଚାରିଲେ କେଉଁ ସ୍ୱର୍ଣ୍ଣପ୍ରଭା, ୧୯୬୦ ମସିହାରେ ରେଭେନ୍ସା କଲେଜରେ ଂରାଜୀ ଅନରସ୍ ନେଇ ପଢୁଥିବା ସ୍ୱର୍ଣ୍ଣପ୍ରଭା ? ବୃଦ୍ଧା ଜଣକ ଏବେ ବିସ୍ଫାରିତ

ନୟନରେ କହି ଉଠିଲେ ତୁମେ ତାହାଲେ ସେଇ ଶୁଭକାନ୍ତ, ମୋର କ୍ଲାସମେଣ୍ଟ । ହଁ ମୁଁ ସେଇ ଶୁଭକାନ୍ତ ତୁମର କ୍ଲାସ୍-ମେଟ୍ । ଦୁହେଁ ଦୁହିଁଙ୍କ ହାତକୁ ଛାଏଁ ଜାବୁଡି ଧରିଲେ, ଦୁହିଁଙ୍କର ଆଖି ଲୁହରେ ଛଳ ଛଳ ହୋଇଗଲା । ଶୁଭକାନ୍ତ କହିଲେ, ସ୍ୱୟଂପ୍ରଭା, ଇଏ ଜଗନ୍ନାଥଙ୍କ ଇଚ୍ଛା ଜୀବନର ଏହି ଅପରାହ୍ନରେ ତାଙ୍କରି ବାଇଶି ପାହାଚରେ ଦେଖା ହେଲା ଦୀର୍ଘ ପଇଁଚାଳିଶି ବର୍ଷ ପରେ । ସ୍ୱୟଂପ୍ରଭା କହିଲେ ଦେଖ ତୁମେ ମତେ ଆଜି ଧରି ନଥିଲେ ମୁଁ ତଳେ ପଡିଯାଇଥାନ୍ତି ଓ ଏଇଠୁ ସିଧା ସଳଖ ସ୍ୱର୍ଗଦ୍ୱାର ଯାଇଥାନ୍ତି । ତୁମେ ମୋତେ ଦ୍ୱିତୀୟ ଥର ପାଇଁ ପଡିଯାଉ ଯାଉ ବଞ୍ଚେଇଲ । ତୁମର ମନେ ଥିବ ରେଭେନ୍‌ସା କଲେଜର ଦୁଇ ମହଲାକୁ ତୁମେ ଉଠିଯାଉଥିଲ ଓ ମୁଁ ତଳକୁ ଓହ୍ଲାଇ ଆସୁଥିଲି, ଚପଲ ସ୍ଲିପ କରିବା ଯୋଗୁଁ ମୁଁ ଭାରସାମ୍ୟ ହରାଇ ପାହାଚରେ ପଡିଯାଉଥିବା ବେଳେ ତୁମେ ମୋତେ ଧରିନେଇଥିଲ, ଠିକ୍ ଆଜି ଯେମିତି ମୁଁ ପଡିଯାଉ ଯାଉ ତୁମେ ମତେ ଧରିନେଲ । କଲେଜ ସାରା କି ପୁଅ କି ଝିଅ ସମସ୍ତଙ୍କପାଇଁ କିଛି ଦିନ ଏହା ଗୋଟିଏ ଚର୍ଚ୍ଚାର ବିଷୟ ହେଲା । ଟୋକା ଗୁଡାକ କହୁଥିଲେ ହିରୋ ହିରୋଇନ କୁ ବିପଦରୁ ରକ୍ଷାକରିବ ନାହିଁତ ଆଉ କଣ ଭିଲିଆନ କରିବ । ସେହି ଦିନଠୁ ତୁମକୁ ମୁଁ ମୋର ହୃଦୟ ସିଂହାସନରେ ବସାଇଥିଲି । କାହାକୁ ବା କୁହନ୍ତି ମୋ ମନର କଥା । ମୋର ସାଙ୍ଗ ସାଥୀମାନଙ୍କୁ ମଧ୍ୟ ଏ କଥା କହିନଥିଲି ମୁଁ । ଆଜି ଏ ବୟସରେ ମୁଁ ଆଉ କଣ ତୁମକୁ ମିଛ କହିପାରିବି, ଏଇ ବାଇଶି ପାହାଚରେ ବସି ।

ଶୁଭକାନ୍ତ କଥାର ମୋଡ ବଦଳାଇ କହିଲେ ତାପରେ ତୁମର କଣ ହେଲା ସ୍ୱୟଂପ୍ରଭା । ସ୍ୱୟଂପ୍ରଭା ଆରମ୍ଭ କଲେ ତାଙ୍କ ଜୀବନର ଲମ୍ବା ଇତିହାସ । ୧୯୬୦ ମସିହାରେ ଆମର ବି.ଏ. ଅନର୍ସର ଶେଷ ବର୍ଷ, ପରୀକ୍ଷାଦେବା ପାଇଁ ମାତ୍ର ଦୁଇମାସ ଥିଲା ମୋର ବାହାଘର ହଠାତ୍ ଠିକ୍ ହୋଇଗଲା ଜଣେ ଇଂଜିନିୟରଙ୍କ ସହିତ । ବାପା କହିଲେ ଏଭଳି ପାତ୍ର ଆଉ ମିଳିବେ ନାହିଁ । ବାହାଘର ପରେ ମୋ ଜୀବନରେ ଆସିଲା ଅନେକ ଝଡ । ଶ୍ୱଶୁର ଘର ଖାନ୍‌ଦାନ ପରିବାର, ଅଜସ୍ର ସମ୍ପତ୍ତି,

ଗାଡ଼ି ମଟର , ଚାକର ବାକର ଅନେକ, କିନ୍ତୁ ସବୁଥିଲେ କଣ ହେବ । ଛଅ ଝିଅ ପରେ ମୋର ସ୍ୱାମୀ ଥିଲେ ଏକ ମାତ୍ର ପୁଅ ମୋ ଶ୍ୱଶୁରଙ୍କର । ବାହାଘରର ଦୁଇବର୍ଷ ପରେ ସେ ଆମେରିକା ଯାତ୍ରା କଲେ । ଟେକ୍‌ସାସର ଗୋଟିଏ ମୋଟର କାର ତିଆରି କରୁଥିବା କମ୍ପାନୀରେ ସେ ଚାକିରୀ ପାଇଗଲେ । କିଛି ଦିନ ପରେ ସେ ଆସି ମତେ ସଙ୍ଗରେ ନେଇଗଲେ ଆମେରିକା । ଆମେ ଦୁହେଁ ରହିଲୁ ସେଠି ଦୁଇବର୍ଷ । ମୋର ଦୁର୍ଭାଗ୍ୟ, ମୁଁ ଗର୍ଭଧାରଣ କରିପାରିଲି ନାହିଁ । ଅନେକ ଔଷଧ ଖାଇଲି, ଅନେକ ଡାକ୍ତରଙ୍କୁ ଦେଖାଇବା ସତ୍ତ୍ୱେ କିଛି ଲାଭ ହେଲା ନାହିଁ । ଶେଷରେ ସ୍ତ୍ରୀ ରୋଗ ବିଶେଷଜ୍ଞ ମାନେ ପରୀକ୍ଷା କରି କହିଲେ ମୋର ଜରାୟୁରେ କ୍ୟାନସର ହୋଇଛି, ତାକୁ ଅପରେସନ ନ କଲେ ମୁଁ ବଞ୍ଚି ରହିବା ଅସମ୍ଭବ ହେବ । ତେଣୁ ଡାକ୍ତର ମାନେ ଅପରେସନ କରି ମୋ ଜରାୟୁକୁ ବାହାର କରିଦେଲେ । ଏହାର କିଛିମାସ ପରେ ମୋ ସ୍ୱାମୀ ଆଣି ମତେ ଘରେ ଛାଡ଼ିଦେଲେ । ସିଏ ଜଣେ ଶ୍ୱେତାଙ୍ଗୀଙ୍କୁ ବିବାହ କରି ଚିରଦିନ ପାଇଁ ସେଠାରେ ରହିଗଲେ ଓ ମତେ ପୁରାପୁରି ଭୁଲିଗଲେ । ଏହାପରେ ଶାଶୁ ଶ୍ୱଶୁରଙ୍କ ଆରମ୍ଭ ହେଲା ମୋ ଉପରେ ଅତ୍ୟାଚାର । ମୁଁ କୁଆଡେ ଗୋଟିଏ ଅଲକ୍ଷଣୀ ଓ ଡାଆଣୀ, କାରଣ ମୁଁ ତାଙ୍କ ଘରକୁ ଆସିବାରୁ ସବୁ ଅନର୍ଥ ଘଟିଲା, ତାଙ୍କ ଘରର ସବୁ ସୁଖ ଶିରୀ ତୁଟି ଗଲା । ତାଙ୍କର ଗୋଟିଏ ବୋଲି ପୁଅ କୁଆଡେ ତାହାରି ପାଇଁ ଘରକୁ ଆଉ ଫେରିଲା ନାହିଁ । ଝିଅ ମାନଙ୍କୁ ପାଠ ପଢେଇ ବାହାଘର କରିବାରେ ସମ୍ପତ୍ତି ସବୁ ବିକ୍ରି ହୋଇଗଲା । ମୁଁ କୁଆଡେ ସମ୍ପତ୍ତିରୁ ଭାଗ ମାଗିବି ସେଥିପାଇଁ ଶ୍ୱଶୁର ମୋର ଜମି, କୋଠାବାଡ଼ ଇତ୍ୟାଦି ରାଧା ଗୋବିନ୍ଦ ମଠ ନାମରେ ଉଇଲ କରିଦେଲାପରେ ସେ ସଂସାର ଛାଡ଼ିଲେ , ଶାଶୁଙ୍କର ମଧ୍ୟ ତା ପର ବର୍ଷ ସ୍ୱର୍ଗବାସ ହେଲା । ଶେଷରେ ମୁଁ ଶାଶୁଘରୁ ତଡ଼ା ଖାଇଲି ।

ଏହା ପରେ ବାପା ଶ୍ୱଶୁର ଘରୁ ମତେ ଘରକୁ ନେଇଗଲେ । ବାପା ବଞ୍ଚିଥିବା ବେଳେ ମୁଁ ସୁଖରେ ଥିଲି , ମା ମୋର ଆଗରୁ ଚାଲିଯାଇଥିଲେ ଆରପାରିକି । ବାପାଙ୍କର ଦେହାନ୍ତ ପରେ ଭାଉଜମାନେ ମତେ

ନିର୍ଯାତନା ଦେବାକୁ ଲାଗିଲେ । ନିର୍ଯାତନା ସହିବାର ଗୋଟିଏ ସୀମା ଅଛି, ଏହା ଅସହନୀୟ ହେବାରୁ ମୁଁ ମାମୁଁ ଘରକୁ ପଳେଇ ଆସିଲି । ମାମୁଁଙ୍କ ଘରେ କିଛିଦିନ ରହିବା ପରେ ସେ ଗୋଟିଏ ପ୍ରାଇଭେଟ୍ ସ୍କୁଲରେ ମତେ ରଖେଇ ଦେଲେ । କିଛିବର୍ଷ ଭଲରେ କଟିଗଲା । ସେଇ ସ୍କୁଲର ଗୋଟିଏ ଛାତ୍ରୀ ସୁଇସାଇଡ୍ କରିବା ଘଟଣାକୁ ନେଇ ସବୁ ଦୋଷ ମୋ ମୁଣ୍ଡଉପରେ ଲଦିଦିଆଗଲା । ମୋର ପ୍ରାପ୍ୟ ଅର୍ଥକୁ ମଧ୍ୟ ସ୍କୁଲର ମ୍ୟାନେଜିଂ କମିଟି କାଟି ରଖି ମୃତ ଝିଅର ବାପାକୁ ଦେଲେ । ଯେହେତୁ ମୁଁ ଜଣେ ଅସହାୟୀ , ଏ ଦୁନିଆରେ ମୋର କେହି ନାହାନ୍ତି ତେଣୁ ମୋ ସପକ୍ଷରେ କେହି ଜଣେ ହେଲେ କହିଲେ ନାହିଁ । ଚୁପ୍‌ଚାପ ରହି କେବଳ ନୀରବ ଦ୍ରଷ୍ଟା ସାଜିଲେ । ଏହା ପରେ ସେ ସ୍ଥାନ ପରିତ୍ୟାଗ କରି ଏହି ସହରକୁ ପଳେଇ ଆସି ଅଳ୍ପ ପରିମାଣ ଅର୍ଥରେ ଗୋଟିଏ ସରକାରୀ ଜାଗାରେ କୁଡିଆ ଟିଏ ତିଆରି କରି ଗୋଟିଏ ଦୋକାନ ଘରକରି ଚଳୁଥିଲି । ଗତ ମହାବାତ୍ୟାରେ ଘରଟି ସମ୍ପୂର୍ଣ୍ଣ ରୂପେ ଭାଙ୍ଗି ଯିବାରୁ ମୁଁ ଆଉ କୌଣସି ଉପାୟ ନ ପାଇ ଏଇ ବାସନ୍ତୀ କୁଟୀରକୁ (ଓଲଡ୍ ଏଜ୍ ହୋମ୍ ) ପଳେଇ ଆସି ରହିଚି ଆଜି ପର୍ଯ୍ୟନ୍ତ । ମୋର ଭାଇ ମାନେ ଏଠାକୁ ଆସି ମତେ ନେଇ ଯିବାକୁ ବସିଥିଲେ, ମୁଁ କିନ୍ତୁ ଯିବାକୁ ମନା କରିଦେଲି । ଆଉ କେତେଦିନକୁ ଜଗା କଷ୍ଟ କରିଛି, କାହିଁକି ନେଇଯାଉନାହିଁ ଜଲଦି, ଏ ନିଆଁ ଲଗା ଜୀବନ କାହିଁକି ରହିଚି, ଲୁଗାକାନିରେ ଲୁହ ପୋଛିଲେ ସେ । କିଛି ସମୟ ପରେ ସେ ପଚାରିଲେ ତୁମେ କିମିତି ଅଛ କୁହ ? । ଶୁଭକାନ୍ତ କହିଲେ ଏତେ ଜଲଦି ତୁମର ଯେ ବାହାଘର ହୋଇଯିବ ତାହା ମୁଁ ଆଦୌ ଭାବି ନଥିଲି । ସତରେ ମୁଁ ମଧ୍ୟ ତୁମକୁ ମନେ ମନେ ବହୁତ ଭଲ ପାଉଥିଲି , ହେଲେ ମୁଁ ବା କାହାକୁ କହିଥାନ୍ତି ମୋ ମନର କଥା । ତୁମର ବାହାଘର କଥା ପରେ ଶୁଣିଲି ଏବଂ ମନେ ମନେ ଜଗନ୍ନାଥ ମହାପ୍ରଭୁଙ୍କୁ ତୁମର ବୈବାହିକ ଜୀବନର ସବୁ ସୁଖ ସମୃଦ୍ଧି ପାଇଁ ମନାସି ଥିଲି ।

ଇଂରାଜୀରେ ଏମ୍.ଏ. ପାସ କରିବାପରେ ମୁଁ ଗୋଟିଏ ସରକାରୀ କଲେଜରେ ଇଂରାଜୀ ଅଧ୍ୟାପକ ଭାବରେ ଚାକିରୀ ଆରମ୍ଭ କଲି । ସମୟ କିମିତି

କଟିଲା ଜାଣି ପାରିଲି ନାହିଁ । ଚାକାରୀ କରିବାର ପାଞ୍ଚବର୍ଷ ପରେ ମୋର ବାହାଘର ହୋଇଗଲା । ଗୋଟିଏ ପୁଅ ଗୋଟିଏ ଝିଅକୁ ନେଇ ମୋର ସଂସାର ଥିଲା । ଝିଅଟି ଇଣ୍ଟରକାଷ୍ଟ ମ୍ୟାରେଜ କରିବାରୁ ଦୁଃଶ୍ଚିନ୍ତାରେ ମୋର ସ୍ତ୍ରୀଙ୍କର ଅକାଳ ମୃତ୍ୟୁ ହେଲା । ପୁଅଟି ଏବେ ସିଙ୍ଗାପୁରରେ ଅଛି, ବର୍ଷକୁ ଥରେ କେବେ କେମିତି ଇଚ୍ଛା ହେଲେ ଆସେ । ଝିଅଟି ବାଙ୍ଗାଲୋରରେ ଅଛି, ସେ ଆଦୌ ଆସେ ନାହିଁ ସେ ଦିନଠାରୁ । ମୋ ଘରେ ମୁଁ ଏକୁଟିଆ, ଏଇ ପରିଣତ ବୟସରେ ନିଃସଙ୍ଗ ଜୀବନ ଯାପନ କରୁଛି । ଜଗନ୍ନାଥ କଣ ଲେଖଛନ୍ତି ମୋ ଭାଲ ପଟରେ ସେ ହିଁ ଜାଣନ୍ତି । ଦୀର୍ଘ ନିଶ୍ୱାସ ଗୋଟିଏ ବାହାରି ଆସିଲା ଶୁଭକାନ୍ତଙ୍କ ଛାତିରୁ ।

କେତେ ସମୟ ବସିବା ଏଠି , ମୋର ଡେରି ହୋଇ ଯାଉଛି , ମୁଁ ଏବେ ଯାଉଛି କହି ଉଠି ପଡିଲେ ସ୍ୱୟଂପ୍ରଭା । ଶୁଭକାନ୍ତ ତାଙ୍କ ହାତ ଧରି ବାଇଶି ପାହାଚରୁ ତଳକୁ ଓହ୍ଲେଇ ଆସି ଠିଆ ହେଲେ ବଡଦାଣ୍ଡରେ । କଣ କରିବେ ଭାବୁଛନ୍ତି ସେ । ହଠାତ୍ କହିଲେ ସ୍ୱୟଂପ୍ରଭା, ମୁଁ ଗୋଟିଏ କଥା କହିବି ରଖିବ ମୋ କଥା ? ତୁମେ ସଧବା, ସିନ୍ଦୁର ପିନ୍ଧୁଛ, କିନ୍ତୁ ସ୍ୱାମୀ ତୁମକୁ ଛାଡି ଚାଲିଯାଇଛନ୍ତି-କେତେ ନିର୍ଦ୍ଦୟ ସେ । ସ୍ୱୟଂପ୍ରଭା କହିଲେ ସିଏ ଯେତେହେଲେ ମୋର ସ୍ୱାମୀ ତାଙ୍କରି ପାଇଁ ମୋର ଏଇ ସାଧବା ବେଶ । ସିଏ ଅଛନ୍ତି କି ନାହାନ୍ତି ମୁଁ ଜାଣେନାହିଁ , ହେଲେ ବିଧବା ବେଶ ଧାରଣ କରିବି କାହିଁକି ? କାଳେ ତାଙ୍କର ଅମଙ୍ଗଳ ହେବ , ମୁଁ ଚାହେଁ ସେ ସୁଖରେ ଥାଆନ୍ତୁ । ଯେଉଁଠି ଥିଲେ ବି , ଯେତେହେଲେ ବି ସ୍ୱାମୀ ତ , ଇହ କାଳ ଓ ପର କାଳର ଦେବତା , ଅଗ୍ନିକୁ ସାକ୍ଷୀରଖି ବେଦି ରେ ବ୍ରାହ୍ମଣଙ୍କ ମନ୍ତ୍ର ପାଠରେ ହାତଗଣ୍ଠି ପଡି ସେ ମତେ ପତ୍ନୀ ଭାବରେ ଗ୍ରହଣ କରିଛନ୍ତି , ମୁଁ ଭୁଲିଯିବି କିମିତି ।

ତୁମକୁ ଗୋଟିଏ ଜିନିଷ ମାଗିବି ସ୍ୱୟଂପ୍ରଭା, ଦେଇ ପାରିବ , ଶୁଭକାନ୍ତ କହିଲେ । କଣ ମାଗୁଛ ମାଗ, କଣ ଅଛି ଯେ ମୋ ପାଖରେ ମୁଁ ଦେଇ ପାରିବି ତୁମକୁ । ଅତୀତରେ ଭୁଲିଯାଇଥିବା ସ୍ମୃତି ଖିଅରୁ କିଛି ଦେଇପାରିବ ?

ମାନେ -

ମାନେ ତୁମେ ସବୁ କିଛି କହିଗଲ ତୁମ ବିଷୟରେ ମୁଁ ସବୁ ଶୁଣିଲି, ମୁଁ ସବୁ କହିଗଲି ମୋ ବିଷୟରେ ତୁମେ ତାକୁ ଶୁଣିଲ। ଆମେ ଏବେ ପିଲା ନୋହୁଁ, ଜୀବନର ଶେଷ ସୋପାନରେ ପଦାର୍ପଣ କରିଛୁ।

ମାନେ, ମୁଁ ତ କିଛି ବୁଝି ପାରୁନାହିଁ

ମାନେ ହେଲା, ତୁମେ ବିବାହିତା କିନ୍ତୁ ସ୍ୱାମୀ ତୁମର କେଉଁଠି ତୁମେ ଜାଣି ନାହୁଁ। ତୁମେ ସତୀ ସାଧ୍ୱୀ ପତିବ୍ରତା ନାରୀ, ଏଇ ସିନ୍ଦୁର ଓ ଦେହ ସବୁ ତୁମ ସ୍ୱାମୀଙ୍କର। ତୁମେ ସଦା ସର୍ବଦା ସୁଖରେ ରୁହ। ଶୁଭକାନ୍ତ ଏହା କହୁଥିବା ବେଳେ ଆଖି ପୋଛୁଥିଲେ ସ୍ୱୟଂପ୍ରଭା। ଥରିଲା କଣ୍ଠରେ କହିଲେ ମୁଁ ପୁଣି ସୁଖରେ ରହିବି, ତୁମେ କୁହ ଯେ ମୁଁ ଜଲଦି ମରିଯାଏ, ମରିଗଲେ ଏସଂସାରରୁ ତରିଯିବି, କହୁକହୁ ଝରିପଡ଼ିଲା ଲୁହଧାର ତାଙ୍କ ଆଖିରୁ। ଶୁଭକାନ୍ତ କହିଲେ, ସ୍ୱୟଂପ୍ରଭା ତୁମେ ଯଦି ମତେ ଭଲ ପାଉଥିଲ ମୁଁ ତାର ପାଉଣ ଏବେ ତୁମକୁ ନିଶ୍ଚିତ ଭାବରେ ମାଗିବି, କାରଣ ଭଲ ଯିଏ ଯାହାକୁ ପାଇଥାଏ ତା ଠାରୁ ପାଉଣା ମାଗିବା ତାର ଅଧିକାର ଥାଏ।

କିଛି ନ କହି ମଉନ ରହିଗଲେ ସ୍ୱୟଂପ୍ରଭା।

ଭୟ କର ନାହିଁ, ମୁଁ କେବଳ ମାଗୁଛି ତୁମର ସେଇ ଦୁଇ ଟୋପା ଲୁହ, ମୋତେ ସବୁଦିନ ଦେଇ ପାରିବ ? କୁହ ଏଇ ବଡଦାଣ୍ଡରେ ଠିଆ ହୋଇ, ଦେଇ ପାରିବ ? ସ୍ୱୟଂପ୍ରଭା ମୁହଁ ଉଠାଇ ଅନେଇ ରହିଲେ ଶୁଭକାନ୍ତଙ୍କ ମୁହଁ କୁ। ଲୁହ ଏବେ ଭରିଯାଇଥିଲା ଶୁଭକାନ୍ତଙ୍କ ଆଖିରେ, ଧିରେ ଧିରେ ଗଣ୍ଡ ଦେଶ ଦେଇ ଲୁହ ବହିଯାଉଥିଲା ତଳକୁ। ନିଜ ଲୁଗା କାନିରେ ବହିଯାଇଥିବା ଲୁହକୁ ପୋଛି ଦେଉଥିଲେ ସ୍ୱୟଂପ୍ରଭା। ତଥାପି କଣ ତୁମେ ମତେ ଭଲ ପାଅ ?

ସ୍ୱୟଂପ୍ରଭାଙ୍କର ଦୁଇ ହାତକୁ ଛାତିରେ ଜାବୁଡି ଧରିଲେ ଶୁଭକାନ୍ତ , ଥରିଲା କଣ୍ଠରେ କହିଲେ , ହଁ ସ୍ୱୟଂପ୍ରଭା, ତୁମକୁ ଆଜିବି ମୁଁ ବହୁତ ଭଲପାଏ । ଭଲ ପାଇବାର ବୀଜ ଥରେ ମନରେ ଅଙ୍କୁରିତ ହେଲେ ସିଏ କଣ ଏତେ ସହଜରେ ମରିଯାଇପାରେ ? ଏ ଦେହ ନଷ୍ଟ ହୋଇ ଯାଇପାରେ କିନ୍ତୁ ଆଶା ମରେ ନାହିଁ, ଆକାଂକ୍ଷା ମରେ ନାହିଁ, ଇପ୍‌ସିତ ବସ୍ତୁ ପ୍ରାପ୍ତି ନହେଲେ ଆତ୍ମା ଅତୃପ୍ତ ରହେ । ମୁଁ ସେହି ଅତୃପ୍ତ ଅନଳରେ ଦଗ୍ଧିଭୂତ । ବଡଦାଣ୍ଡରେ ଠିଆ ହୋଇ ତୁମକୁ କଣ ମିଛ କହି ପାରିବି? କହି ଚାଲିଥିଲେ ଶୁଭକାନ୍ତ ହଁ...ହଁ....ତୁମକୁ ମୁଁ ଆଜି ମଧ୍ୟ ଭଲ ପାଏ । ତୁମର ଏ ଦେହଟାକୁ ନୁହେଁ, ତୁମର ମନକୁ ତୁମର ପ୍ରାଣକୁ ମୁଁ ପ୍ରାଣ ଦେଇ ଭଲପାଏ। ଆଜି ମୁଁ ତୁମକୁ ପାଇ ଛାଡି ଦେଲେ ବଞ୍ଚିବି କେମିତି କୁହ ତ ? ସେମାନଙ୍କର କଥା ଶୁଣିବାକୁ ସେତେବେଳେ ବଡ ଦାଣ୍ଡରେ କେହି ଜଣେ ବି ନ ଥିଲେ । ସେମାନେ ଚାଲି ଯାଉଥିଲେ କେଉଁ ଏକ ଅନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ଶୂନ୍ୟ ବଡ ଦାଣ୍ଡରେ ।



# ଖାସି

କାଲୁ ମିଆଁ ସକାଳୁ ସକାଳୁ ଆସି ତା କେବିନ ଖୋଲିଲାଣି । ଗତ ମହାବାତ୍ୟାରେ ଉଡି ଯାଇଥିବା ଟିଣ ଖଣ୍ଡିକ ଏପର୍ଯ୍ୟନ୍ତ ସେ ଲଗେଇ ନାହିଁ । ସେଇ ଭଙ୍ଗା କେବିନରେ ସେ ତାର ନିତି ଦିନିଆ କାରବାର ଚଳେଇଛି । କେବିନ ମରାମତି କରିବାପାଇଁ ତାକୁ ସମୟ ନାହିଁ । ଆଜି ରବିବାର, ବାବୁମାନେ ଆସିବେ ଭାରି ଭିଡ ହେବ । ବାବୁ ମାନେ ତାଙ୍କର ଇଚ୍ଛା ମୁତାବକ ଫରମାଇସ କରିବେ । ତେଣୁ ସକାଳୁ ସକାଳୁ ଆସି ତାର ପୁରୁଣା ସାଇକେଲଟିକୁ କେବିନ୍ ପଛ ପଟେ ଡେରି ଦେଇ ସାଥିରେ ଆଣିଥିବା ଖାସିଟିକୁ ବାଉଁଶ ଖୁଣ୍ଟରେ ବାନ୍ଧି ପକାଇଲା । ବାଉଁଶ ଟୋକେଇ ଭିତରୁ ବାହାର କଲା ଚମଡା ଉତାରି ଆଣିଥିବା ଦୁଇଟି ମାଇ ଛେଳି । ଦୁଇଟି ଯାକ ମାଇ ଛେଳିର ପଛ ଫଡିଆକୁ ଦଉଡିରେ ବାନ୍ଧି କେବିନ ସାମନାରେ ଓହଳେଇ ଦେଲା । ଏହା ଯେ ମାଇ ଛେଳି ନୁହେଁ ଗରାଖ ମାନଙ୍କ ଜାଣିବା ପାଇଁ ତାକୁ ସମ୍ପୂର୍ଣ୍ଣରୂପେ ଖାସିର ନିର୍ଭୁଲ ସଂକେତ ଦେଇ ତାର ଦୁଇ ଫଡିଆ ମଝିରୁ କୃତ୍ରିମ ମୂତ୍ର ଯନ୍ତ୍ରର ନାଡଟି ଓହଳେଇ ଦେଲା । ପାନ ଖଣ୍ଡେ କଳରେ ଯାକି ମୁଣ୍ଡିଆ କାଠଟିକୁ ଛୁରି ସାହାଯ୍ୟରେ ରାମ୍ପିଲା । କାଠଟିକୁ କିଛି ସମୟ ରାମ୍ପି ସାରିବା ପରେ ପାନ ପିକ ପକେଇ ରାସ୍ତା ଆଡକୁ ଚାହିଁଲା । ଆଜି ଗରାଖ ମାନେ ଗଲେ କୁଆଡେ ।

କାଲୁମିଆଁର ପ୍ରକୃତ ନାମ ବର୍‌କତ୍ ଅଲ୍ଲୀ କିନ୍ତୁ ତାକୁ କାଲୁମିଆଁ ବୋଲି ସମସ୍ତେ ଡାକନ୍ତି, କାରଣ କାଲୁମିଆଁ ଦେଖିବାକୁ ସମ୍ପୂର୍ଣ୍ଣ ରୂପେ କଳା । ଚେକ୍ ଲୁଙ୍ଗି ଓ ଗଞ୍ଜି ବ୍ୟତୀତ ଆଉ କିଛି ପିନ୍ଧେନାହିଁ । ଗୋଟି ଗୋଟି ଦାନ୍ତ । ଦାନ୍ତ ଗୁଡିକୁ ପାନ ଖାଇଗଲାଣି । ମୁଣ୍ଡର ବାଳ ପ୍ରାୟ ପାଚି ଆସିଲାଣି । ଥୋଡିରେ ମୁଠାଏ ଦାଢି, ନିଶ ନାହିଁ । କେବିନରେ ବସି ଗରାଖମାନଙ୍କ ଉଦ୍ଦେଶ୍ୟରେ କୁହେ ବାବୁ, ଆସନ୍ତୁ, ଲଉନ, ମାଲ ଖୁବ୍ ବଢିଆ ଅଛି । କୃତ୍ରିମ ମୂତ୍ର ଯନ୍ତ୍ରଟିକୁ ହାତରେ ଧରି କୁହେ ଏଇଟା ମାଇଛେଳି ନୁହେଁ ବାବୁ, ଏଇଟା ଖାସି । ବାନାମ୍ବର ବାବୁ ତାର ଫିରିକିଟି

ଭଲ ଭାବରେ ଜାଣନ୍ତି । ସେଦିନ ସକାଳୁ ତା କେବିନ ପାଖରେ ପହଞ୍ଚିଯାଇ କହିଲେ କଣ କିରେ ହରକତ ମିଆଁ ଆଜି କଣ କିଛି ନୂଆ ମାଲ ଆଣିଛୁ । କାଲୁମିଆଁ ଜାଣିଛି ବାନାମ୍ବର ବାବୁଙ୍କୁ, ତେଣୁ ସେ ସଙ୍ଗେ ସଙ୍ଗେ କହିଲା ବାବୁ ଟିକିଏ ଛାଡ଼ିକରି ଆସୁନ । ଭଲ ଜିନିଷ ଦେବି ।

କ୍ରମେ କ୍ରମେ ଖରା ଟାଣ ହେଲାଣି । ଖାସିଟା ପୂର୍ବବତ୍ ଆଉ ପାକୁଳି କରୁନାହିଁ । ଅର୍ଦ୍ଧ ମୁଦ୍ରିତ ନୟନରେ କେବଳ ସେଇ ବନ୍ଧାହୋଇଥିବା ବାଉଁଶ ଖୁଣ୍ଟଟିକୁ ଏକ ଧ୍ୟାନରେ ଅନେଇ ଠିଆହୋଇଛି । ଗୋଡ ଉଠଉନାହିଁ କି ଲାଞ୍ଜ ମଧ୍ୟ ହଲାଉ ନାହିଁ । କାଲୁମିଆଁର ଛୁରୀକୁ ଦେଖି ଦେଖି ସେଇଟା ଅଭ୍ୟସ୍ତ ହୋଇଗଲାଣି । ଥରେ ଅଧେ ନୁହେଁ କାଲୁମିଆଁ ସେଇଟାକୁ ଦଶ କି ପନ୍ଦର ଦିନ ଧରି ସେଇ ବାଉଁଶ ଖୁଣ୍ଟରେ ବାନ୍ଧି ଗରାଖ ମାନଙ୍କୁ ଆକୃଷ୍ଟ କରୁଛି । ଖାସିଟା ମଧ୍ୟ କାଲୁମିଆଁର ଫିରିକିଟି ବୁଝି ପାରିଲାଣି । କାଲୁମିଆଁର ଦାଡିଭଳିଆ ତାର ମଧ୍ୟ ଦାଡି ତଳକୁ ଓହଳିଛି । କାଲୁମିଆଁ ପାନ ଚୋବାଇବା ଆରମ୍ଭ କଲେ ଖାସିଟା ମଧ୍ୟ ପାକୁଳି କରିବା ଆରମ୍ଭ କରେ । ଉଭୟଙ୍କ ଦାଡି ପ୍ରାୟ ଏକ ସମୟରେ ହଲିବାକୁ ଆରମ୍ଭକରେ । ଏହା ଦେଖିବା ଲୋକେ ହିଁ ଜାଣିପାରନ୍ତି । କାଲୁମିଆଁର ଦେହର ରଙ୍ଗ କିଟି କିଟି କଳା ଓ ଖାସିର ରଙ୍ଗ ମଧ୍ୟ ସେହିପରି କଳା, ଗୋଟିଏ ଛନଛନିଆ ଖାସି, ଦେହରେ ମାଛି ବସି ପାରିବେନାହିଁ ।

ଗରାଖ ମାନେ ଯେତେବେଳେ ତା କେବିନ ପାଖରେ ରୁଣ୍ଡ ହୋଇଯାଆନ୍ତି, ତାକୁ କୁହନ୍ତି, ଆରେ ମିଆଁ ଏଇଟାକୁ କାଟୁନୁ । ପାନଟାକୁ ଚୋବେଇ ଚୋବେଇ କାଲୁମିଆଁ କୁହେ, ବାବୁ, ଇଏ କଣ ହବ । ତା ପାଇଁ ଗରାଖ କାହାନ୍ତି । ଆଉ ସେମିତି ଗରାଖ ନ ମିଳିଲେ ତା ଦିହରେ ହାତ ଦେବ କିଏ । ଲଉନ, ଇଏ କଣ ଖରାପ ମାଲ । ଇଏ ସବୁ ଗୋଟିଏ ମାଆ ପେଟର, ଗୋଟିଏ ଗୁହାଳର । ଗରାଖ ମାନେ ବାଧ୍ୟ ହୋଇ ଓହଳା ହୋଇଥିବା ଛେଳିର ଫଡିଆରୁ କିଏ କେଜିଏ, କିଏ ଅଧକେଜି ନେଇ ଘରକୁ ଫେରନ୍ତି । ବାନାମ୍ବର ବାବୁ ପରିବା କିଣିସାରି ସେଠାରେ

ଆସି ପହଞ୍ଚିଲେ, ସାଥିରେ ଅଛନ୍ତି ନବବାବୁ, ବିମ୍ବାଧର ବାବୁ, ରଙ୍କନିଧିବାବୁ ଓ ଫୈୟାଜ୍ ଖାଁ, ତାଙ୍କ ସହିତ ଆଉ ତିନି ଚାରିଜଣ ଅଜଣା ଲୋକ ଆସି ମିଶି ଗଲେଣି, ସେମାନଙ୍କର ଉଦ୍ଦେଶ୍ୟ ସେଇ ଖାସିଟିକୁ କଟେଇବେ। ବାନାମ୍ବର ବାବୁ କହିଲେ କିରେ କାଲୁମିଆଁ, କାଟୁନୁ ଏଇଟାକୁ, ଆମେ ପରା ଆଠ ଦଶ ଜଣ ହେଲୁଣି। କାଲୁମିଆଁ କହିଲା, ବାବୁ, ଆଠ ଦଶ ଜଣର ଇଏ କଣ ମାମଲା। ସମାନ ଷୋହଳ କେଜି ଅଛି। ଆପଣମାନେ ନେଇ ନେଇ କେତେ ନେବେ, ଖୁବ ବେଶିରେ ଦଶ କିଲୋ, ଆଉ ବଳକା ମାଂସ ମୁଁ କଣ କରିବି? ଯାକୁ ନବା ବାଲା କାହାନ୍ତି। ଆଜିକାଲି ସମସ୍ତେ ବ୍ରୟେଲର ଚିକେନ୍ ଖାଉଛନ୍ତି ବାବୁ, ଯାକୁ ଖାଇବା ବାଲା କେତେଜଣ ଅଛନ୍ତି।                କାଲୁମିଆଁର କଥା ଶୁଣି ଶୁଣି ଫୈୟାଜ୍ ଖାଁ ଖାସିଟାର ଅଣ୍ଟାକୁ ଚିପି ଧରି  କହିଲା, ଏଇଟା ଖୁବ ବେଶିରେ ପନ୍ଦର କେଜି କିମ୍ବା ତହିଁରୁ ଟିକିଏ ଅଧିକ ହୋଇ ପାରେ। ସମସ୍ତେ ଅପେକ୍ଷା କରୁଥିଲେ କାଳେ ଆଉ କେହି ଗରାଖ ଯୁଟିବେ। ଏଇ ସମୟରେ ହଠାତ୍ ଚାରିଜଣ ଟୋକା ଦୁଇଟି ହିରୋହଣ୍ଡା ମଟର ସାଇକଲରେ ଆସି ତା କେବିନ ନିକଟରେ ପହଞ୍ଚି ଯାଇ, ଗାଡିର ଷ୍ଟାଟ ବନ୍ଦ ନ କରି କହିଲେ, ଆରେ ମିଆଁ, ଏଇ ଖାସିଟାକୁ ରଖିଥା, ଆମେ ଏଇଠୁ ଆସୁଛୁ। ଆମେ ଆସିବା ପରେ ଏଇଟାକୁ କାଟିବୁ। କାଲୁମିଆଁ କହିଲା ବାବୁ, ସାର୍‌ମାନେ ପରା କେତେବେଳୁ ଠିଆ ହୋଇଛନ୍ତି ସବୁ ବାଣ୍ଟିକରି ନେଇଯାଆନ୍ତୁ। ଟୋକା ଜଣକ କହିଲା ବାବୁ କଣ ବେ, କହିଲି ପରା ଭୋଜି ଅଛି ସବୁତକ ଯିବ, ଏତିକି କହି ଦେଇ ସେଠାରୁ ସେମାନେ ଚାଲିଗଲେ। କାଲୁମିଆଁ ଛିଡାହୋଇଥିବା ବାବୁମାନଙ୍କ ଉପରେ ଗୋଟିଏ ହତାଶିଆ ଚାହାଣି ଫିଙ୍ଗିଦେଇ କହିଲା, ଆଜି କଣ କି ବାବୁ ? ବାନାମ୍ବର ବାବୁ କହିଲେ ପାର୍ଟି ଫାର୍ଟିର ମିଟିଂ ହେଉଥିବ। ଇଏ ଟୋକାଙ୍କ ଚେହେରାରୁ ଯାହା ଜଣାପଡୁଛି ଇଏ ଆଜି ନୁହେଁ, ଚାଲନ୍ତୁ ଯିବା, ଏହା କହି ସମସ୍ତେ ସେଠାରୁ ଯିବାକୁ ଉଦ୍ୟତ ହେଉଥାନ୍ତି। ସେହିସମୟରେ ମୁହଁରେ ଘଞ୍ଚ ଦାଢି, ହାତରେ ଲୁହା କଡା ଓ ଜିନ୍‌ସ ପିନ୍ଧି ଥିବା ଦାଦା ଟୋକା ଜଣକ ଜିପ୍‌ରୁ ଓହ୍ଲେଇ ଆସି ସେଠାରେ ପହଞ୍ଚିଗଲା। ଟୋକାଟା ତାର ଦାଢିକୁ ଆଉଁସି ଆଉଁସି କହିଲା, ଏଇଟାକୁ କାଟିଲୁ

କେତେହେବ ଦେଖିବା । କାଲୁମିଆଁ ଆଁଟା କରି ତାକୁ ଅନେଇ ରହିଥାଏ, ଆଉ ଜଣକ ଜିପ୍‌ରୁ ଓହ୍ଲେଇ ଆସି କହିଲା, କାଲଟାକିରେ ଶୁଣିପାରୁନାହୁଁ, ଯ୍ଲପ, ଚଞ୍ଚଳ ଏଇଟାକୁ କାଟ କହୁଛି ପରା । କାଲୁମିଆଁ ଥଙ୍ଗ ଥଙ୍ଗ ହୋଇ କହିଲା ଆଜ୍ଞା ଏଇଟା ବରାତି ହୋଇଯାଇଛି । ଚାରିଜଣ ବାବୁ ଆସିଥିଲେ ଆଡଭାନ୍‌ସ ଦେଇ ଯାଇଛନ୍ତି । ଦାଡିବାଲା ଦାଦା ଟୋକାଟା କହିଲା କେତେ ଟଙ୍କା ଆଡ୍‌ଭାନ୍‌ସ ଦେଇଛନ୍ତି, ହଜାରେ ନା ଦୁଇହଜାର ? ଏଇ ନେ ଧର ଟଙ୍କା, ମାଲ୍‌ଟା ତୋ ଦୋକାନରେ ଅଛି, ଯିଏ ପଇସା ଦେବ ସେ ନବ । ଚଞ୍ଚଳ କାଟ, ଏଇ ନେ ଧର ଟଙ୍କା, କେଜି କେତେକରି ନଉଛୁ ? କହୁ କହୁ ଜିନ୍‌ସ୍ ପ୍ୟାଣ୍ଟ ପଛ ପକେଟରୁ ଦାଦା ଟୋକା ଜଣକ ପର୍ଶ ବାହାର କରି ଟଙ୍କା ଗଣିବାକୁ ଆରମ୍ଭ କଲା । କାଲୁମିଆଁ କଣ କରିବ କଣ ନାଇଁ ମନେ ଭାବୁଥାଏ, ଏଇ ସମୟରେ ମଟର ସାଇକଲରେ ସେଇ ଚାରି ଜଣ ଟୋକା ସେଠାରେ ଆସି ପହଞ୍ଚି ଗଲେ ଓ କହିଲେ, ଆରେ ମିଆଁ ଏଇଟାକୁ ଚଞ୍ଚଳ କାଟ, ସବୁ ଠିକ୍ ଠାକ୍ କରି ଦେଇ ଆସିଛୁ । କାଲୁ ମିଆଁ ଦୁଇ ଦଳର ଟୋକା ଗୁଡାଙ୍କୁ ଜଳକା ପରି ଅନାଇ ଥାଏ । ଉଭୟ ଦଳର ଟୋକା ଗୁଡାକ କାଲୁମିଆଁକୁ ଏକାଥରକେ କହି ଉଠିଲେ ଏଇଟାକୁ କାଟ ଆମେ ନେବୁ । ହଠାତ୍ କାଲୁମିଆଁ ଉପରୁ କଥାର ଗତି ବଦଳି ଯାଇ ଡାଇରେକ୍ଟ ଲାଇନ ଧରିଲା । ଦୁଇଦଳର ଟୋକା ମାନେ ମୁହାଁ ମୁହିଁ ହେଲେ ।

ଦାଡି ଆଉଁସି ଆଉଁସି ଦାଦା ଟୋକା ଜଣକ କହିଲା, ଆମେ ଟଙ୍କା ଦେଇ ସାରିଲୁଣି, ଏଇ ମାଲ ଆମର । ଆର ଦଳର ଜଣେ ଟୋକା କହିଲା ଆମେ ପ୍ରଥମେ ବରାତ ଦେଇଯାଇଥିଲୁ, ଏଇଟା ଆମର ରିଜର୍ଭ । ଶେଷରେ କଥାକୁ ମାକି ମାକି ମୋଟା କରିବାରୁ ଦୁଇ ଦଳର ଦାଦା ଟୋକାମାନଙ୍କର ହାତ ମୁଠା ଗୁଡିକ କ୍ରମେ ଶକ୍ତରୁ ଶକ୍ତତର ହେବାକୁ ଲାଗିଲା । ସେମାନଙ୍କ ମଧ୍ୟରେ କଥା କଟାକଟି ଆରମ୍ଭ ହୋଇଗଲା । ଦାଡି ରଖିଥିବା ଦାଦା ଟୋକାଟି କହିଲା, କିଏ ଅଣ୍ଡିରି ପୁଅ ଅଛି ଏଠୁ ଖାସିଟା ନେଇଯିବ । ଶଳା, ଖାସି ନବ କଣ ବେ, ନିଜେ ଖାସି ବନିଯିବ ।

ଆର ଦଳର ଚାରିଜଣ ଦାଦା ଟୋକା ଏକାଥରକେ କହିଉଠିଲେ, ଆମେ ଢେର ଦାଦା ଦେଖିଛୁ । ଶଳା, ବାଳ ଗୋଟିଏ ଫୋପାଡିଲେ ଦାଦା ଗୋଟିଏ ଆସିବ । ଏହା ପରେ ଚାଲିଲା ଭୀଷଣ ଶବ୍ଦର ପ୍ରୟୋଗ, ଅଶାଳୀନ ଶବ୍ଦରେ ବାୟୁମଣ୍ଡଳ ଦୂଷିତ ହୋଇଗଲା । ଦୂରରୁ ବାନାମ୍ବର ବାବୁ, ନବ ବାବୁ କହୁଥିଲେ କାଲୁମିଆଁଟା ଆଜି ମଲା । ସବୁଦିନ ଠକୁ ଥିଲା ଆଜି ଯିବ କୁଆଡେ । ଫୈୟାଜ୍ ଖାଁ କହିଲା, ୟେ ତ ମୁଝେ ପୈଲେହିଁ ମାଲୁମ ଥା, ଏଇସେହିଁ ହୋଗା । ବିମ୍ବାଧର ବାବୁ କହିଲେ, ଆମ୍ଭେମାନେ ସବୁ ମହାଭାରତର ଅଷ୍ଟାଦଶ ପର୍ବ ପଠନ କରିଥାଉଁ, ଇଏ ହେଉଛି ଖାସି ପର୍ବ, ଦେଖନ୍ତୁ ଓ ଶୁଣନ୍ତୁ । ତେଣେ ଧୁମ୍ ବଚସା ଚାଲିଥାଏ । ହଠାତ୍ ଦାଢିବାଲା ଦାଦା ଟୋକାଟା ଡାକ ପକାଇଲା, ଆବେ ଅନେଇଛ କଣ, ଗାଡି ଭିତରୁ ଭୁଜାଲି ଗୁଡାକ ନେଇ ଆସ । ଏହା ଶୁଣିବା ମାତ୍ରେ ଗାଡିରେ ବସିଥିବା ଆଉ ଦୁଇଜଣ ଦାଦା ଟୋକା ହାତରେ ଭୁଜାଲି ମାନ ଧରି ଗାଡି ଭିତରୁ ତଳକୁ ଖପ୍ ଖାପ୍ ଡେଇଁ ପଡିଲେ । ସୂର୍ଯ୍ୟ କିରଣରେ ଭୁଜାଲି ଗୁଡାକ ଚକ୍ ଚକ୍ ଦେଖାଯାଉଥାଏ । ଏହା ଦେଖି ଆର ଦଳର ଦାଦା ଟୋକା ଗୋଡାକ ସେ ସ୍ଥାନରୁ ଛତ୍ର ଭଙ୍ଗ ଦେଲେ ।

ସେମାନଙ୍କର ପଳାୟନ ପଥକୁ ଅନେଇ ରହି ଦାଢି ରଖିଥିବା ଦାଦା ଟୋକା ଜଣକ ନିଜ ଦାଢି ଉପରେ ହାତ ବୁଲାଇ ଆଣି ଦାନ୍ତ କାମୁଡି କହିଲା, ଶଳା ମାଇଚିଆ, ଭାଗ୍ୟ ଭଲ ପଳେଇଗଲ, ନହେଲେ ଶଳାଙ୍କୁ ଫାଡି ଦେଇଥାନ୍ତି । ଦାଦା ଟୋକାଙ୍କର ଆଉ ଖାସି ଉପରେ ନଜର ନାହିଁ । ବଚସାରେ ବିଜୟ ଲାଭ କରିଥିବାରୁ ପଳାତକଙ୍କ ଭୀରୁତା ଉପରେ ଆଲୋଚନା ଚଳେଇଥାନ୍ତି । କାଲୁମିଆଁ ତାର ଛୁରୀ ଓ କଟୁରୀକୁ କେତେବେଳୁ ନିଜ ବ୍ୟାଗରେ ପୁରେଇ ତା ଉପରେ ବସି ପଡିଛି, କାଳେ କେତେବେଳେ ବୋଲା ବୋଲି ହେଉ ହେଉ କେହି ଯଦି ସେଇ ଖାସି କଟା ଯନ୍ତ୍ରଟିକୁ ମଣିଷ ଉପରେ ବ୍ୟବହାର କରିପକେଇବ ତାହାଲେ ସିଏ ତ ମରିବ, ତାର ଛୁରୀ ଯେହେତୁ ସିଏ ମଧ୍ୟ ଜେଲ୍ ଯିବ । ଭାରି ହୁସିଆର କାଲୁମିଆଁ ସତରେ । ଏତେ ସମୟଧରି ବଚସା ଓ ଗୋଳମାଳ ଚାଲିଥିବା ସତ୍ତ୍ୱେ ଖାସିଟି ସେମିତି ନିରବରେ ଛିଡା ହୋଇଥାଏ ଓ ଏକ ଧ୍ୟାନରେ ଖୁଣ୍ଟକୁ ଅନେଇଁ ଥାଏ । ସତେ ଯେମିତି ଜଣେ

ନିର୍ବିକାର ପୁରୁଷ କିମ୍ବା ଜଣେ ତପ ସିଦ୍ଧ ଋଷି । ଲକ୍ଷ କରିବା ଲୋକେ ଏବେ ଦେଖିବେ ଖାସିଟାର ଦାଡି କିମ୍ବା କାଲୁମିଆଁର ଦାଡି ପୂର୍ବବତ୍ ଆଉ ହଲୁ ନାହିଁ । ରାସ୍ତା ଉପରେ ଛିଡା ହୋଇ ଦାଡି ରଖିଥିବା ଦାଦା ଟୋକା ସହିତ ତାର ସାଥି ମାନେ ଫୁଟାଣି ମାରୁଥିଲେ ।

ଚାରିଜଣ ଯାକ ଦାଦା ଟୋକା ଭୟରେ ଧଇଁସଇଁ ହୋଇ ଯାଇ ଥାନାରେ ହାଜର ହେଲେ । ଥାନାବାବୁଙ୍କୁ ଦଣ୍ଡବତ ପକେଇ କହିଲେ, ସାର୍, ଆମକୁ ମାରିପକେଇବେ ସେମାନେ, ରକ୍ଷାକରନ୍ତୁ, ସେମାନେ ଭୁଜାଲି ଧରି ଆମକୁ ହାଣିବାକୁ ଗୋଡାଇଛନ୍ତି । ମନୋହର ଦାସ ଜଣେ ଛଅ ଫୁଟିଆ ନିଶ ରଖିଥିବା ପୋଲିସ ଏସ୍.ଆଇ., ଗର୍ଜି ଉଠି ଆସନରୁ ଛିଡା ହୋଇ କହିଲେ କିଏ ସେ, ମନୋହର ଦାସ ଥାଉ ଥାଉ ତୁମ ମାନଙ୍କୁ ଗୋଡେଇ ଗୋଡେଇ ହାଣିବ ? ଏତେ ସାହସ ତାର । ସାର୍, ସେମାନେ ସେଇଠି ଅଛନ୍ତି, ଯଆନ୍ତୁ ଦେଖିବେ, କହୁଛନ୍ତି ପୋଲିସ୍ କିଏବେ, ପୋଲିସ୍ କଣ କରିବ ଆମର । ମନୋହର ଦାସ ଜିପରେ ଦୁଇଜଣ କନେଷ୍ଟବଳଙ୍କୁ ଧରି କାଲୁମିଆଁ କେବିନ ପାଖରେ ହାଜର ହେଇଗଲେ । ସତକୁ ସତ ଦାଡିବାଲା ଦାଦା ଟୋକା ଓ ତାର ସାଥୀମାନଙ୍କ ହାତରେ ଭୁଜାଲି ଧରିଥିବା ସେ ଦେଖିଲେ । ଘଟଣାଟି ଯେ ସତ ସେ ଠଉରେଇ ନେଲେ, କହିଲେ ଥାନାକୁ ଚାଲ, ଗାଡିରେ ବସ । ଧନ୍ଦା ଲଗେଇଛ ଏଠି ସବୁ । କନେଷ୍ଟବଳ ଦୁଇଟି କାଲୁମିଆଁକୁ ମଧ୍ୟ ଖାସିଟି ସହିତ ଥାନାକୁ ଯିବାକୁ କହିଲେ ।

ଥନା ବାରଣ୍ଡାରେ ବସିଛନ୍ତି କାଲୁମିଆଁ, ଦାଡିବାଲା ଦାଦାଟୋକା ଓ ତାର ସାଥିମାନେ । ଖାସିଟା ଥାନା ବାରଣ୍ଡାର ଗୋଟିଏ ଖୁଣ୍ଟରେ ବନ୍ଧା ହୋଇଛି ଓ ଛିଡା ହୋଇ ଅର୍ଦ୍ଧ ମୁଦ୍ରିତ ନୟନରେ ଢୁଳଉଛି । ଥାନା ବାରଣ୍ଡାରେ ଶୋଇଥିବା କୁକୁରଟା ଆଶ୍ଚର୍ଯ୍ୟ ହୋଇ ତାକୁ ଅନେଇ ରହିଛି, ଭାବୁଛି ଆଜି ଏଇ ନୂଆ ଜନ୍ତୁଟା ଏଇଠି ଆବିର୍ଭାବ ହେଲା କିପରି । ମଧ୍ୟାହ୍ନ ଭୋଜନ ଓ ବିଶ୍ରାମ ନେବା ପରେ ସାଢେ ତିନିଟା ବେଳକୁ ମନୋହର ଦାସ ଥାନାକୁ ଆସିଲେ । ଦାଡିବାଲା ଦାଦା ଟୋକାକୁ

ଭିତରକୁ ଡକେଇ କହିଲେ ତୁମ ନାଁରେ ତିନୋଟି ଦଫା ଲାଗିବ, କଣ, ବୁଝିଲ ତ। ଦାଦା ଟୋକା ଜଣକ ଟିକିଏ ଘାବୁରେଇ ଯାଇ ଡାହାଣ ହାତରେ ମୁଣ୍ଡର ପଛପଟ କୁଣ୍ଡଉ କୁଣ୍ଡଉ କହିଲା ସାର, ଆମେ ହେଲୁ ଦଳୀୟ ଲୋକ। ମନୋହର ଦାସ ଚଡା ଗଳାରେ କହିଲେ, ଦଳ ଫଳ, ପାର୍ଟି, ଫାର୍ଟି ମୁଁ କିଛି ଜାଣେନାହିଁ, ସିଧା ଭିତରେ ପୁରେଇ ଦେବି। ତା ପରେ ଥାନା ପଛପଟ ବାରଣ୍ଡାକୁ ଯାଇ ଅନେକ ସମୟ ପର୍ଯ୍ୟନ୍ତ ଥାନା ବାବୁଙ୍କ ସହିତ ଦାଡିରଖିଥିବା ଟୋକାଟା କଥା ହୋଇ ସାରି ସେ ସ୍ଥାନରୁ ଚାଲିଯିବା ବେଳେ କହିଲା ସାର, ଆପଣ ଅଛନ୍ତି ଆମ ଲୋକ, ଟିକିଏ ବିଚାର କରିବେ, ଟିକିଏ ଦୟା ରଖିଥିବେ।

କାଲୁମିଆଁ ସେମିତି ଥାନା ବାରଣ୍ଡା ଖୁଣ୍ଟକୁ ଆଉଜି ବସିଛି। ଭୋକରେ ପେଟ ଜଳିଲାଣି। ଘରୁ ଭୋର ଭୋର ବାହାରି ଆସିଥିଲା, ଭାବିଥିଲା ଚଞ୍ଚଳ ଘରକୁ ଫେରିଲେ ଖାଇବ। ଥାନାବାବୁ ତାକୁ ଭିତରକୁ ଡକେଇ ପଠେଇଲେ। ସେ ଭିତରକୁ ଗଲା ଓ ଥାନାବାବୁଙ୍କ ଟେବୁଲ ସାମ୍ନାରେ ଠିଆ ହେଲା। ଥାନା ବାବୁ ଚୌକିରେ ବସି ତାକୁ ପଚାରିଲେ ଏଇଟା ତୋର ଖାସି ପ୍ରମାଣ କଣ ?ତୁ ଏଇଟାକୁ ଚୋରି ନ କରିଥିବୁ ବୋଲି କିଏ କହିବ ? ଥାନାବାବୁଙ୍କ କଥା ଶୁଣି କାଲୁମିଆଁର ତଣ୍ଟି ଶୁଖି ଆସିଲା, କାନ ମୁଣ୍ଡ ଝାଇଁ ମାରିଗଲା। ସେ କହିଲା, ବାବୁ ଏଇଟା ମୋର, ଏଇଟାକୁ ମୁଁ ହାଟରୁ କିଣିଥିଲି, ଖୁଆଇ ପିଆଇ ବଡେଇଛି। ଥାନା ବାବୁ ପଚାରିଲେ ହାଟ ରସିଦ୍ ଦେଖା। କାଲୁମିଆଁ କହିଲା ହାଟ ରସିଦ୍ ମୋ ପାଖରେ ନାହିଁ ଆଜ୍ଞା। ଥାନା ବାବୁ କହିଲେ ପ୍ରମାଣ ନଦେଲେ ଏ ଖାସି ତୁ ଫେରି ପାଇବୁ ନାହିଁ। କାଲୁମିଆଁ ଜକଜା ପରି ଥାନା ବାବୁଙ୍କ ମୁହଁକୁ ଅନେଇ ରହିଲା। ଥାନା ବାବୁଙ୍କ ପଛପଟେ କାନ୍ଥରେ ଝୁଲୁଛି ହାତକଡି, ଦଉଡି, ଗୋଟିଏ କୋଣରେ ଥୁଆ ହୋଇଛି ମା ଦୁର୍ଗାଙ୍କର ଫଟୋ, ଆଉ ଗୋଟିଏ କଣରେ ଥୁଆ ହୋଇଛି ବନ୍ଧୁକ ଓ ପୋଲିସ ବାଲାଙ୍କର ଲମ୍ବା ଲମ୍ବା ଡେଙ୍ଗା। ଆଉ ପଟେ ହାଜତଟା ପୁରାପୁରି ଫାଙ୍କା। ହାଜତଟାକୁ ଦେଖି କାଲୁମିଆଁ ଦବିଗଲା। ସେ କିଛି ନ କହି କେବଳ ଚୋରଟା ପରି

ଠିଆହୋଇଥାଏ । ଥାନା ବାବୁ କହିଲେ ଏଇଠି ଦସ୍ତଖତ କର । କାଲୁମିଆଁ ଥରିଲା ହାତରେ ଦସ୍ତଖତ କରୁଥିଲା । ଥାନା ବାବୁ ଗର୍ଜି ଉଠିଲେ, ଆବେ, ଉର୍ଦ୍ଦୁରେ କଣ ଦସ୍ତଖତ କରୁଛୁ, ତତେ କଣ ଓଡିଆ ଭାଷା ଆସେନାହିଁ ? ଓଡିଆରେ ନଚେତ ଇଂରାଜୀରେ ଦସ୍ତଖତକର । କାଲୁମିଆଁ ଓଡିଆରେ ବର୍କତ୍ ଅଲ୍ଲୀ ଲେଖୁ ଲେଖୁ ହର୍କତ୍ ଅଲ୍ଲୀ ଲେଖିଦେଲା । ଦସ୍ତଖତ କରି ସାରିବା ପରେ ଅସହାୟ ଭାବରେ ଥାନାବାବୁଙ୍କ ମୁହଁକୁ ଅନେଇ ରହିଲା । ଥାନା ବାବୁ କହିଲେ ତୋର ଏବେ କାମ ସରିଲା, ଘରକୁ ଯାଆ । କାନ ମୁଣ୍ଡ ଅଣ୍ଡାଳି ଅଣ୍ଡାଳି କାଲୁମିଆଁ ଥାନା ବାରଣ୍ଡା ପାହାଚରୁ ତଳକୁ ଓହ୍ଲେଇ ଆସିଲା । ସେ ଏବେ ବୁଝିଗଲା ଯେ ଖାସିଟା ଆଉ ତାର ନୁହେଁ, ଖାସିଟା ଏବେ ଗୋଟା ଯାକ ଥାନାବାବୁଙ୍କର । ସେ ତଳକୁ ଓହ୍ଲେଇ ପଡି ଦୀର୍ଘ ନିଶ୍ୱାସଟାଏ ପକାଇଲ, ବୁଲିପଡି ପୁଣି ପଛକୁ ଅନେଇଲା, ଖାସିଟି ସେମିତି ନିଶ୍ଚୁପ ଭାବରେ ଛିଡା ହୋଇଛି, ହଲଚଲ ମଧ୍ୟ ହେଉନାହିଁ । ବୁଲା କୁକୁରଟା ତା ପାଖରେ ପେଟେଇଛି । ଖାସି ଉପରେ ଆଖି ବୁଲେଇ ଆଣିଲା ସିଏ । ଏଇଟାକୁ ଛଅମାସ ତଳେ ସିଏ ଖୁଏଇ ପିଏଇ ଏଡୁଟେ କରିଛି, କମ୍‌ସେ କମ୍ ଟଙ୍କା ତିନି ହଜାର ହେବ । ଖାଇଗଲେ ଶଳେ ପୋଲିସ ବାଲା, ମନେ ମନେ କହି ଉଠିଲା ସିଏ । କାନ୍ଧରେ ପଡିଥିବା ଗାମୁଛା କୁ ନେଇ ଝାଳୁଆଟାକୁ ପୋଛି ଆଖି ଫେରାଇନେଲା ଖାସିଟା ଉପରୁ । ତାକୁ ଯେ ସେ ଆଉ ଫେରି ପାଇବ ସେ ଆଶା ସିଏ ପୁରାପୁରି ମନରୁ ଛାଡିଦେଇଥିଲା । ସେ ଶୁଣି ପାରୁଥିଲା ପଛରୁ କମିଲ ଖାଁ କନେଷ୍ଟବଳଟା ପାଟିକରି କହୁଥିଲା, କ୍ୟା ହୁଆ, ତେରେ କୋ ଘର ଯାନେ କେ ଲିଏ ମନ ନେହିଁ କର ରହା ହୈ କ୍ୟା । ଏବେ ଆଗକୁ ପାଦ ବଢାଇଲା ସିଏ ବହୁ କଷ୍ଟରେ ।

ଅପରାହ୍ନ ଚାରିଟା । ଥାନା ବାବୁ ପାଟି କରି ଉଠିଲେ, ଆବେ ଗୋବରା, କୁଆଡେ ଗଲା ସିଏ । ଗୋଟିଏ ଡାକରେ ଗୋବରା ଚୌକିଦାର ହାଜର । ଥାନା ବାବୁ ତାକୁ ଆଦେଶ ଦେଲେ ଖାସିଟାକୁ ନେଇ ସେଇ ଆମ୍ବ ଗଛ ମୂଳ ବାନ୍ଧି ଦେବାକୁ । କମିଲ ଖାଁ ତା କଥା ବୁଝିବ । ଏହା ପରେ ଥାନା ବାବୁ ଅନ୍ୟାନ୍ୟ ସଉଦା ସହ ଜାଳେଣି କାଠର ଯୋଗାଡ କରିବା ପାଇଁ ଅନ୍ୟ କନେଷ୍ଟବଳ ମାନଙ୍କୁ ଆଦେଶ

ଦେଲେ । ଜମିଲ ଖାଁ ତାର ଛୁରୀଟାକୁ ଧାର କରିବାକୁ ଲାଗିଗଲା । ଧୁନ୍ଦା ନାୟକକୁ ଡାକି ଥାନାବାବୁ ଆଦେଶ ଦେଲେ ଏବଂ କହିଲେ ତୁ ଯାଇ ଫରେନ୍ ଲିକ୍ରର ମାଲିକକୁ କହିବୁ, ମୁଁ ପଠେଇଛି ସେ ଗୋଟିଏ ପେଟି ପଠେଇ ଦେବ, କଣ, ବୁଝିଲୁ କି ନାହିଁ । ଖବରଦାର ସେ ଚାକର ଟୋକାକୁ କିଛି କହିବୁନାହିଁ । କଷ୍ଟ ଧରୁଆ କନେଷ୍ଟବଳ ରୋଷେଇ ସରଞ୍ଜାମ ଆୟୋଜନରେ ଲାଗି ପଡିଥିଲା । ସମସ୍ତଙ୍କ ମନରେ ଆନନ୍ଦର ଲହରୀ ।

ସନ୍ଧ୍ୟା ହେବାକୁ ଯାଉଛି, ଆମ୍ବ ଗଛ ମୂଳଟା ଘନ ଅନ୍ଧକାର । ଜମୀଲ ଖାଁ ଅନ୍ଧାର ଭିତରେ ଖାସିଟାକୁ ଅଣ୍ଡାଳୁଛି କିନ୍ତୁ ପାଉନାହିଁ । ସେ ହଠାତ୍ ପାଟିକରି ଉଠିଲା ଆରେ ଭାଇ ଗୋବରା ଜଲଦି ଆସ, ଖାସିଟାକୁ କେଉଁଠି ବାନ୍ଧିଥିଲ ମୁଁ ପାଉ ନାହିଁ । ଗୋବରା ଓ ଜମୀଲ ଖାଁ ଦୁହେଁ ଆମ୍ବ ଗଛ ମୂଳଟାକୁ ଅଣ୍ଡାଳିବାରେ ଲାଗିଥିଲେ । ଗୋବରା ହଠାତ୍ ଖାସିଟା ବନ୍ଧା ହୋଇଥିବା ଦଉଡିଟାକୁ ପାଇଗଲା, ଆରେ ଖାଲି ଦଉଡିଟା କଣ, ଖାସିଟା ଗଲା କୁଆଡେ ? ପାଟି କରି ଉଠିଲା ଜମୀଲ ଖାଁ କହିଲା ତୁ ସେଇଟାକୁ ବାନ୍ଧି ଥିଲୁ କିମିତି । ଶେଷରେ ସମସ୍ତେ ଚାରିଆଡେ ଖଜା ଖୋଜି କଲେ କିନ୍ତୁ କେହି ଖାସିଟାକୁ ପାଇଲେ ନାହିଁ । ଥାନା ବାବୁଙ୍କ ପାଖକୁ ଯାଇ ଗୋବରା ଡରି ଡରି କହିଲା ସାର୍, ଖାସିଟା ଖସି ଗଲା, ଯେତେ ଖୋଜିଲେ ବି ଆଉ ମିଳୁନାହିଁ । ଥାନାବାବୁ ପାଟିକରି ଉଠିଲେ, କିମିତି ବାନ୍ଧିଥିଲୁ ବେ, ଶଳା, ଚୋର ଗୁଣ୍ଡାକୁ ଭଲକରି ବାନ୍ଧି ପାରୁଛୁ, ଖାସିଟାକୁ ବାନ୍ଧି ପାରିଲୁନାହିଁ । ହରାମି, ଅପଦାର୍ଥ ଶଳାଟା, ମାଟି କରିଦେଲା ସବୁ । ଗୋବରା କାନମୁଣ୍ଡ ଅଣ୍ଡାଳି ଅଣ୍ଡାଳି ଚୋରଟା ପରି ଠିଆ ହୋଇଥିଲା, ଶେଷରେ କହିଲା, ଭଲ କରି ବାନ୍ଧିଥିଲି ସାର୍, ଫାଶରୁ ମୁଣ୍ଡଟି କିମିତି ବାହାର କରି ପଳେଇଛି । ଆଉ ଡେରି କରନାହିଁ ଯାଅ ସମସ୍ତେ ତାକୁ ଖୋଜ ଏଇଠି କେଉଁଠି ଥିବ, ଥାନା ବାବୁ ଆଦେଶ ଦେଲେ । ସମସ୍ତେ ଲଣ୍ଠନ ଓ ଟର୍ଚ୍ଚ ଲାଇଟ ଧରି ଚାଲିଲେ । ଚାରିଆଡେ ଅନ୍ଧାର, ଆମ୍ବ ଗଛ ମୂଳ, ବଉଳ ଗଛ ମୂଳ, କଦମ୍ବ ଗଛ ମୂଳ, ପାଇଖାନା ପଛ, ଥାନା ସୀମାରେ ଥିବା ନିମ୍ବ ଗଛ ମୂଳ

ଚାରିଆଡେ ସମସ୍ତେ ଖୋଜିଲେ କିନ୍ତୁ ଖାସିଟିକୁ ପାଇଲେ ନାହିଁ । ସମସ୍ତେ ଖୋଜି ଖୋଜି ନିରାଶ ହୋଇ ଥାନାକୁ ଫେରି ଆସିଲେ ।

ଥାନା ବାରଣ୍ଡାର ଲାଇଟ୍ ଲିଭିଗଲାଣି କେବଳ ରୁମ୍ ଭିତରେ ଗୋଟିଏ ଲାଇଟ୍ ଜଳୁଛି । ଥାନା ଭିତରେ କେହି ନାହାନ୍ତି, ଚାରିଆଡେ ସୁନସାନ । ଥାନା ବାରଣ୍ଡା ବେଞ୍ଚ ଉପରେ ବସି ଜମିଲ୍ ଖାଁ ମନକୁ ମନ କହି ଉଠିଲା ଏଇସା ଭି କଭି କଭି ହୋତା ହୈ ।

କାଲୁମିଆଁ ଥାନାରୁ ଚାଲି ଚାଲି ଆସି ତା କେବିନ ପାଖରେ ପହଞ୍ଚିଲା । କେବିନ ପଛ ପଟେ ରଖିଥିବା ସାଇକେଲଟିର ତାଲା ଖୋଲି ଚଢିବା ବେଳକୁ ଦେଖିଲା ପଛଚକରେ ହାୱା ନାହିଁ । ସାଇକେଲଟିକୁ ପେଲି ପେଲି ମରାମତି ପାଇଁ ଦୋକାନକୁ ନେଲା । ଶେଷରେ ଘରେ ପହଞ୍ଚୁ ପହଞ୍ଚୁ ରାତି ଦଶଟା । ଘରେ ତାର ସ୍ତ୍ରୀ ଜାହିଦା ବେଗମ୍ ତାକୁ ଦେଖି କହି ଉଠିଲା ଇତ୍‌ନା ଦେର କ୍ୟୁଁ ହୁଆ । କାଲୁମିଆଁ କହିଲା ମୁସିବତମେ ଫସ୍ ଗେୟ୍ଥା କହି ଘର ଭିତରକୁ ପଶିଗଲା । ଘର ଭିତରେ ପିଲାମାନେ ଶୋଇଛନ୍ତି, ଚାରି ପୁଅ ଚାରି ଝିଅ । ଜାହିଦା କହିଲା ବଡ ଦୁଇପୁଅଙ୍କୁ ବାନ୍ତି ଓ ଝାଡା ହେଉଛି କିଛି ଖାଇନାହାନ୍ତି ସିମିତି ଶୋଇଛନ୍ତି ଓ ସାନ ଦୁଇ ଝିଅଙ୍କୁ ବୁଖାର, ମୁଝେ ଭି ବୁଖାର ହୈ । ବକ୍ରୀ କାହାଁ ଗେୟ୍ଥା, ପଚାରିଲା ଜାହିଦା, କିଛି ନକହି କାଲୁମିଆଁ ଅଗଣାରେ ପଡିଥିବା ଦଉଡିଆ ଖଟ ଉପରେ ଶୋଇଗଲା । ନିଦ କଣ ହେଉଛି ତାକୁ । ଖଟ ଉପରେ ସିନା କ୍ଲାନ୍ତ ଦେହଟାକୁ ଗଡେଇ ଦେଇଥିଲା, ହେଲେ ମନଟା ତାର ଖାସି ପାଖରେ ଥିଲା । ସ୍ତ୍ରୀ ଲୋକଙ୍କୁ ଏବାବଦରେ କିଛି ନକହିବା ଭଲ । ସେମାନେ କଥାଟାକୁ ଅଯଥା ବଢାଇବେ, କିଛି ସମାଧାନ କରିପାରିବେ ନାହିଁ, ଶେଷରେ କ୍ରୋଧ ବଢିବ ଓ ଘରେ ଅଶାନ୍ତି ହେବ । ମନେ ମନେ ଭାବୁଥିଲା କାଲୁମିଆଁ ଶଳା ଜମିଲ୍ ଖାଁ କନେଷ୍ଟବଳଟା ବୋଧହୁଏ ଖାସିଟାକୁ ଜଭେ କରି ମାଂସ ବନେଇ ସାରିଥିବ । ରୋଷେଇ ସରିଯାଇଥିବ ଓ ଥାନାରେ ଧୁମ୍ ଧାମ୍ ଖିଆ ପିଆ ଚାଲିଥିବ । ଥାନାରେ ଖିଆ ପିଆର ଦୃଶ୍ୟ ତା

ଆଖିକୁ ଦେଖାଗଲା ଓ ତା ସହିତ ଦେଖାଗଲା ଥାନାବାବୁଙ୍କର ପଟା ପଟା ନିଶ ହଳକ । ଶଳେ ସବୁ ଖାଇଗଲେ, କିଛି ବୁଝିଲେ ନାହିଁ, କିଛି ବିଚାର କଲେ ନାହିଁ, ଏ ଦୁନିଆରେ କଣ ଭଗବାନ ନାହାନ୍ତି, ଶୋଇ ଶୋଇ ଭାବୁଥିଲା କାଲୁମିଆଁ, କେତେବେଳେ ତା ଆଖିକୁ ନିଦ ଆସି ଯାଇଛି ସେ ଜାଣେ ନାହିଁ ।

ସକାଳ ହେବାକୁ ଆହୁରି ସମୟ ବାକି ଅଛି । ଢାହିଦା କବାଟ ଖୋଲି ବାହାରକୁ ଆସିଲା । ଚାରିଆଡେ ଅନ୍ଧାର, ରାସ୍ତାକଡ ମ୍ୟୁନିସିପାଲିଟି ଇଲେକ୍‌ଟ୍ରିକ ଖୁଣ୍ଟରେ ଲାଇଟ୍ ଜଳୁଛି । ସେ ହଠାତ୍ ଦେଖିଲା ଖାସିଟା ବାହାର ବାରଣ୍ଡାରେ ଶୋଇଛି । ୟେ ଆଲ୍ଲା, ୟେ ଆଲ୍ଲା, ହମାରି ବକ୍ରୀ ହମାରି ଘର୍ ମେ । ବକ୍ରୀ ବକ୍ରୀ କହି ଘର ଭିତରକୁ ଦୌଡି ଗଲା । କାଲୁମିଆଁ ଧଡ ପଡ ଉଠି ବସି କାହାଁ କାହାଁ ହମାରି ବକ୍ରୀ କହି ବାହାରକୁ ଚାଲି ଆସିଲା । ଖାସି ଟି ସେମିତି ଶୋଇଛି ବାହାର ବାରଣ୍ଡାରେ । ରାସ୍ତା କଡ ଲାଇଟ୍‌ରେ ଦେଖା ଯାଉଛି ସ୍ପଷ୍ଟ ଭାବରେ । ଆଲ୍ଲା ଆଲ୍ଲା କହି କାଲୁମିଆଁ ଦଣ୍ଡେ ଚାହିଁ ରହିଲା ଖାସିଟିକୁ । ବ୍ରାହ୍ମମୁହୂର୍ତ୍ତ, ସେ ନମାଜ କରି ବସିଲା । ଆଲ୍ଲାଙ୍କ ନିକଟରେ ସେ କୃତଜ୍ଞତା ଜ୍ଞାପନ କଲା । ଆଲ୍ଲା ତେରି ଲାଖ ଲାଖ ମେହେରବାନୀ, ସେ ନତମସ୍ତକ ହେଉଥିଲା ଆଲ୍ଲାଙ୍କ ଉଦ୍ଦେଶ୍ୟରେ ।

ଶୋଇଥିବା ଖାସିଟାର ବେକଟାକୁ ଧରି ଭିଡି ଆଣିଲା ଘର ଭିତରକୁ, କହିଲା, କମ୍ବକତ୍ ମେରି ଜୀନା ହାରାମ କରଦିୟା ତୁନେ । ସାରା ରାତ ମୈନେ ନେହିଁ ଶୋୟା ଥା । ଖାସିଟା ସେଇ ପ୍ରଥମ ଓ ଶେଷ ଥର ପାଇଁ ମେଁ....ଏଁ....ଏଁ ଶବ୍ଦ କଲା । ତା ପରେ କାଲୁମିଆଁ ତା କାମ ବତାଇ ଦେଲା । ସକାଳେ କାଳେ ପୋଲିସ ତା ଘରକୁ ଆସିଯିବ ଭାବି ତରବର ହୋଇ ଖାସିଟାର ଚମଡା ଉତାରି ବାଉଁଶ ଟୋକେଇରେ ଭର୍ତ୍ତୀ କରି ତା କେବିନ ନିକଟରେ ହାଜର ହୋଇ ଖାସିଟାର ପଛ ଫଡିଆକୁ କେବିନ ସାମନାରେ ବାନ୍ଧି ତଳକୁ ଝୁଲେଇ ଦେଲା ।

ସକାଳୁ ସକାଳୁ ନଗି ତା ପାନ ଦୋକାନ ଖୋଲି ଠାକୁର ଫଟୋରେ ଫୁଲ ଚନ୍ଦନ ଲଗେଇ ପ୍ରଣିପାତ କରି କାର୍ଯ୍ୟଆରମ୍ଭ କଲା । ବାନାମ୍ବର

ବାବୁ ତାଙ୍କ ଝିଅକୁ ସ୍କୁଟରରେ ବସାଇ ସ୍କୁଲକୁ ନେବା ବାଟରେ ନଗି ପାନ ଦୋକାନ ପାଖରେ ଅଟକିଲେ, କହିଲେ ନଗି, ଚଞ୍ଚଲ ଚଞ୍ଚଳ ପାନ ବନା । କାଲୁମିଆଁର କେବିନକୁ ଦେଖି କହିଲେ, କିରେ ମିଆଁଟା ଆଜିପୁଣି କଣ ସକାଳୁ ସକାଳୁ ବଡଟେ ଝୁଲେଇଛି । ନଗି ପାନ ଭାଙ୍ଗୁ ଭାଙ୍ଗୁ କହିଲା, ଆଜ୍ଞା ଏଇ ମିଆଁ କଥା କୁହନ୍ତୁ ନାହିଁ, ତା ପାଖରେ ସବୁ ଅସଲି ଖାସି, ମାନେ ମାଇ ଛେଳି ବି ଖାସି ଓ ମେଣ୍ଢା ବି ଖାସି । ସିଏ ବେପାର କରିବା ପାଇଁ ଖାସି କହି ସମସ୍ତଙ୍କୁ ଭୁଆଁ ବୁଲଉଛି । ଦେଖୁନାହାନ୍ତି, ସକାଳୁ ସକାଳୁ କେଡେ ମେଣ୍ଢାଟେ ଝୁଲାଇଛି । ନଗି କହୁଥିଲା ସେଇଟା ମେଣ୍ଢା ନୁହେଁତ ଆଉ କଣ । ସିଏ ଆଉ କାହାକୁ ଠକିବ, ମୋତେ ଠକି ପାରିବ ନାହିଁ ।

ବାନାମ୍ବର ବାବୁ ପାନ ନେଇ ସେଠାରୁ ଚାଲି ଗଲେଣି । କ୍ରମେ ଖରାର ତାତି ବଢିବାକୁ ଲାଗିଲାଣି । କେହି ଜଣେ ହେଲେ ଗରାଖ ତା ପାଖକୁ ଆସିଲେ ନାହିଁ । ଯିଏ ଆସିଲା ନଗି ପାନ ଦୋକାନ ପାଖରୁ ପଳେଇ ଗଲା । କାଲୁମିଆଁ ମଝିରେ ମଝିରେ ନିଜର ଝାଳୁଆ ମୁହଁଟାକୁ ଗାମୁଛାରେ ପୋଛୁଥିଲା । ଫାଙ୍କା ଟିଣ ମଧ୍ୟ ଦେଇ ସୂର୍ଯ୍ୟ କିରଣ ତା ଉପରେ ପଡିଲା, ସିଏ ତା କେବିନରେ ଚୁପ୍ ଚାପ୍ ବସିଥିଲା । କେବିନ ପାଖର ବାଉଁଶ ଖୁଣ୍ଟଟା ଖରାରେ ସିଝୁଥିଲା । ଓହଳା ହୋଇଥିବା ଖାସି ଟା ସେମିତି ଝୁଲୁଥିଲା ଓ ଖରାରେ ସିଝୁଥିଲା । କୁତୀଟା ମୁହଁ ଶୁଖେଇ କେବିନ ତଳେ ପେଟେଇ ଥିଲା ।





## ଶ୍ରୀ ହରିଶ୍ଚନ୍ଦ୍ର ବେହେରା
### ଜନ୍ମ ତା.୭.୨.୧୯୫୧

ଶ୍ରୀ ହରିଶ୍ଚନ୍ଦ୍ର ବେହେରାଙ୍କ ଜନ୍ମ ବାରିପଦା ନିକଟସ୍ଥ ଆମ୍ବସିକଡା ଗ୍ରାମରେ । ଶିକ୍ଷାଗତ ଯୋଗ୍ୟତା - ଉତ୍କଳ ବିଶ୍ୱବିଦ୍ୟାଳୟରୁ ଇତିହାସ ଓ ପବ୍ଲିକ ଆଡ୍‌ମିନିଷ୍ଟ୍ରେସନରେ ସ୍ନାତକୋତ୍ତର ଡିଗ୍ରୀ ଓ ଆଇନ୍‌ରେ ସ୍ନାତକ । ୧୯୭୯ ମସିହାରେ ଓଡ଼ିଶା ପ୍ରଶାସନିକ ସେବାରେ ଯୋଗଦାନ । ଛାତ୍ରାବସ୍ଥାରୁ ସାହିତ୍ୟ ପ୍ରତି ଅନୁରାଗ । ତାଙ୍କର ବହୁ ଲେଖା ବିଭିନ୍ନ ସମୟରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ସେ ଏକାଧାରରେ ଜଣେ କବି, ଗାଳ୍ପିକ, ନାଟ୍ୟକାର ଓ ପ୍ରାବନ୍ଧିକ । ତାଙ୍କର ଅନେକଗୁଡ଼ିଏ ପୁସ୍ତକ ପ୍ରକାଶିତ ହୋଇଛି ଯଥା :

**କବିତା :**

ତଥାପି ପାଦପ
ଲାବଣ୍ୟବତୀର ମେଘ

**ନାଟକ :**

ଝରେ ଶ୍ରାବଣ, ଝୁରେ ଫଗୁଣ

**କ୍ଷୁଦ୍ରଗଳ୍ପ :**

ସ୍ପର୍ଶ

**ପ୍ରକାଶ ଅପେକ୍ଷାରେ :**

ଏକାଙ୍କିକା ସଂକଳନ,
ରମ୍ୟରଚନା ସଂକଳନ
କ୍ଷୁଦ୍ରଗଳ୍ପ ସଂକଳନ

ସମ୍ପ୍ରତି ବାରିପଦା ଆଦିବାସୀ ଉନ୍ନୟନ ସଂସ୍ଥାର ପ୍ରକଳ୍ପ ପ୍ରଶାସକ ଭାବରେ କାର୍ଯ୍ୟରତ ।

**ପ୍ରକାଶକ**

**ମୂଲ୍ୟ - ପଚାଶ ଟଙ୍କା ମାତ୍ର**